# ଜଗନ୍ନାଥ ଚକ୍ରବର୍ତ୍ତୀଙ୍କ କବିତା

ବଙ୍ଗୀୟ କବି :
ଡକ୍ଟର ଜଗନ୍ନାଥ ଚକ୍ରବର୍ତ୍ତୀ

ଓଡ଼ିଆ ଅନୁବାଦ :
ଡକ୍ଟର ଅନନ୍ତ ଚରଣ ଶୁକ୍ଳ

# JAGANNATHA CHAKRABARTINKA KABITA

A Collection of Oriya Translations of Bengali poems by
Dr. Jagannatha Chakrabarty

Translated by
Dr. Ananta Charana Sukla

ପ୍ରଥମ ପ୍ରକାଶ :
ରାସ ପୂର୍ଣ୍ଣିମା, ୧୯୭୫

ପ୍ରକାଶକ :
ଶ୍ରୀ ସହଦେବ ପ୍ରଧାନ
ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ :
ବିନୋଦବିହାରୀ
କଟକ-୨

ପ୍ରଚ୍ଛଦ :
ଶ୍ରୀ ଜୟନ୍ତ ଚକ୍ରବର୍ତ୍ତୀ
ବିଶ୍ୱଭାରତୀ-କଳା ଭବନ, ଶାନ୍ତିନିକେତନ

ମୁଦ୍ରକ :
ଶ୍ରୀ ନୃସିଂହ ଚରଣ ପାତ୍ର
ଶାଶ୍ୱତ ମୁଦ୍ରଣୀ
୧/୪, ପ୍ରେମଚନ୍ଦ୍ର ବଡ଼ାଲ ଷ୍ଟ୍ରୀଟ
କଲିକତା-୧୨

ମୂଲ୍ୟ : ୫ ଟଙ୍କା

ସାହିତ୍ୟଗୁରୁ

ଡକ୍ଟର ସୁବୋଧ ଚନ୍ଦ୍ର ସେନଗୁପ୍ତ

ଶଦ୍ଧଦ୍ବଚରେଷୁ

ଜଗନ୍ନାଥ

ଅନନ୍ତ

# ସୂଚୀପତ୍ର

# କାରାର ପ୍ରାର୍ଥନା

ମୋତେ ଶାନ୍ତି ଦିଅ, ମୁକ୍ତି ଦିଅ,
ମୋର ଏଇ ଲୁହା କାନ୍ଥରେ ହାତୁଡ଼ି ପିଟ,
ମୋର ଏଇ ଇସ୍ପାତ ଫଳକର ପେଶୀରେ କୁଠାର ହାଣ ।
କିଏ ତୁମେସବୁ ବାହାରେ ?   କିଏ ତୁମେସବୁ ଏ ଦେଶର ମଣିଷ ?
ମୁଁ ଜେଲଖାନା—ମୁଁ ଇଂରେଜର କାରାଗାର—
ମୋତେ ଦୟା କର
ମୋର ଏଇ ଗରଦଦ୍ୱାରର ଅସହ୍ୟ ଅଚଳାୟତନରୁ
ମୋତେ ମୁକ୍ତି ଦିଅ ।

ଦେଖିଲି, ଆସିଲେ
ସହରତଳିରୁ କାରଖାନାର ଶ୍ରମିକ
ମୁଣ୍ଡରେ ବେଣ୍ଟ୍ରେନ୍ ବନ୍ଧା,
ଆସିଲେ ମୁହଁରେ ଶ୍ଳୋ ଗାନ ଗାଇ ;
କାଟନ୍‌ର ଜୋଧ ପ୍ରେମ ନଙ୍କର ଓଠ ଭରି
ବାଟାର, ଟ୍ରାମର, ଏକ୍ଲେନ୍‌ଟେବଷ୍ଟର ଉତ୍ତେଜନାରେ ସେମାନେ ତେଜୋଦୃପ୍ତ
ଆସିଲେ ତାଙ୍କର ଭାଙ୍କ'ଲ
ଶୃଙ୍ଖଳ ଛିନ୍ନ ।

ଦେଖିଲି, ଆସିଲେ
ଶୀତ-ସନ୍ଧ୍ୟାରେ ଠାଏ ଠାଏ ନଗ୍ନ ଦେହ
ଦ୍ୱୀପ-ନଦୀ-ପ୍ରଗନାର ସନ୍ତାନମାନେ
ଅଣ୍ଟାରେ ଦଉଡ଼ି, ହାତର କବ୍‌ଜାରେ ବେଢ଼ି
ଆଗରେ ପଛରେ ପ୍ରହରୀ
ଘୃଣା ଜାଲର ଅଜ୍ଞାତ ଶବ୍ଦମାନେ ଆସିଲେ ।
ଆଖିରେ ମୁହଁରେ ଅଗ୍ନିରେ ଝଲକ
ସମ୍ଭବତଃ ବଜ୍ରର ଜ୍ୟୋତି ।

ଏ କିଏ ?
କିଏ ଏମାନେ ମଶାଲ ଜାଳୁଛନ୍ତି ?
ଜେଲ୍‌ର ରାତିର ପ୍ରେତମୂର୍ତ୍ତିମାନେ
ସେମାନେ କିଏ ?
ଏଠି ବି ଜତୁଗୃହ ?
ପ୍ରହରୀବେଷ୍ଟିତ ମୁଁ ପାଷାଣ ହୋଇ ଗୃହେ ଦେଖୁଛୁ ;
ବନ୍ୟାରେ ଅନେକଶ୍ୱାସୀ ହୋଇଉଠିବା ଖାଲର ଜଳ ପରି
କଳ-କଳ ହୋଇଉଠନ୍ତି ୱାର୍ଡ଼ର ବନ୍ଦୀମାନେ,
ଫୁଲିଉଠନ୍ତି ରାଗରେ, ଫୁଲିଉଠନ୍ତି ଭୟରେ, ଆତଙ୍କରେ,
ନଦ ଗୁଣ୍ଡ ତେଇଁପଡ଼ନ୍ତି ସେମାନେ
ବନ୍ଧୁକର ତୀକ୍ଷ୍ଣ ଫଳକ ପରି ;
କାନ୍ଥ ଡେଇଁ ଝାମ୍ପୁଡ଼ି ପଡ଼େ ଚତ୍କାର
କମ୍ପିଉଠେ ରାତିର ଅନ୍ଧକାର
କମ୍ପିଉଠେ ଜାହ୍ନଦର ଗୁଡ଼ ।

ଶଇତାନ୍, ତୋ ଲୋଭର ବୋଧହୁଏ ସୀମା ନାହିଁ,
ତାକୁ ବ ଧରଆଣିଛ ଏଠିକ ?
ବ ସ୍ତୁହରା, ମା–ମରା ଝିଅଟାକୁ ବ ଶହାଡ ଦେବନ ?
ଛିନ୍ନମୂଳ ମଣିଷ ଉଡ଼େଇଦେବା ତୁମର ପେଶା
ଦେଶରୁ ଦେଶାନ୍ତର,
ହୁଲିଆ କୁକୁର ପର ପିଛା ନେଇଛ ?
ସୈରନ୍ଧ୍ରୀର ସମ୍ମାନରେ ବ ହାତଦେବ ?

"ଖବରଦାର ଶୈତାନ୍"...
ସେ କିଏ ?...
କିନ୍ତୁ ଏଠି କାହିଁକ ?
ଏଇ ପାଷାଣପୁରୀର ପାତାଳ ଗହ୍ୱରରେ
ଆଲୋକ ହାଓ୍ୱାର ନିଃସୀମାର ବାହାରେ
ଏଠି କାହିଁକ ?
"ଖବରଦାର୍"...
"ସେ କିଏ ?...
"ନାଗବଛା ଦଳ ଶୁଣିଯାଅ ତୁମେ
ଏ ବିଷ ମୁଁ ଫେରେଇଦେବ ତୁମର କଣ୍ଠନାଳୀକୁ
ମନେ ରଖ
ଏ ଦେଶର ବେହୁଲାମାନେ ବିଧବା ହେଇ ନାହାନ୍ତି
ସେମାନଙ୍କର ଭେଳା ଭାସୁଛି ଶତ୍ରୁ ରକ୍ତର ଗର୍ତ୍ତରେ
ହ୍ରଦରେ, ଜଙ୍ଗଲରେ, ପଡ଼ିଆରେ ଶତ୍ରୁ ଶିବିରର ଶୀର୍ଷରେ

ସେମାନଙ୍କର ସଞ୍ଜୀବନ ମନ୍ତ୍ର ଜଳୁଛି ଦାଉ ଦାଉ ;
ଶୈତାନ୍ ହସ୍ପି ଦେଖ
ତେଲେଙ୍ଗାନାର ଲଖିନ୍ଦର ଘାଗ ମୋଡ଼ୁଛି
କୃଷ୍ଣା ଗୋଦାବରୀର ଦୁଇ ତୀର ଦେଇ
ଦପ୍ ଦପ୍ କରୁଛି ତୁମର ଟଙ୍କନାଣ ।
ଏଠି ବି ଆମେ ଅଜି
ଆମର ବେଷ୍ଟ୍ରେକ୍‌ନଖା ହାତ ଉଠେଇଲୁଁ —
ଶୈତାନ୍, ଧ୍ୱଂସ ହୁଅ ।"

ଏ ଅବଦମିତ ଯନ୍ତ୍ରଣା ମୋର ଅସହ୍ୟ
ଫାଟିପଡ଼ିବ, ଫାଟିପଡ଼ିବ ମୁଁ
ଗୁଣ୍ଡଚେଙ୍ଗଡ଼ା ହୋଇଯିବ ।
ୟାର୍ଡ଼ରେ ୟାର୍ଡ଼ରେ କୁକୁର ଛୁଲେଇଦେଇ
ଅଟ୍ଟହାସରେ ଭାଙ୍ଗି ପଡ଼ୁଛି ?
ରାତିର ଅନ୍ଧକାରରେ ଡଣ୍ଡି ଚପି ମାରିବାର ଖାଉସ୍ତ ଉଲ୍ଲାସରେ
ନାଚଉଠୁଛ ?
ପିଶାଚ, ପିଶାଚ ।
ଏ ନରକ ଯନ୍ତ୍ରଣାର ଶେଷ କେବେ ?
ମୋତେ ଭାଙ୍ଗି ଦିଅ
କିଏ ତୁମେ ଏ ଦେଶର ମଣିଷ ?
ମୋତେ ଦୟା କର ।

ବାରୁଦରେ ବାରୁଦରେ ଦେଶଟା ବିସ୍ଫୋରକ ହୋଇଉଠିଲା —

ଘରେ ଘରେ ଗ୍ରେପ୍ତାର୍ ପରୱାନା
ଗୋଇନ୍ଦା-ପଙ୍ଗପାଳମାନଙ୍କର ଉତ୍ପାତରେ ଆକାଶ ନିରୁଦ୍ଧ,
ସଙ୍ଗୀନ୍‌ର ଖୁଞ୍ଚାରେ, ଗ୍ୟାସରେ, ଚିତ୍କାରରେ
ବିଧ୍ୱସ୍ତ ଦେଶ-ପ୍ରାନ୍ତର, ଅପ୍ରେୟ କାରଖାନା ।
ଆଉ ନୁହେଁ ।

•

ପାଗଳା ଘଣ୍ଟିକୁ ଶୁଣନ୍ତି କେଉଁମାନେ ?
ଶିଲଂଠୁଁ ବିଚ୍ଛୁରିପଡ଼ୁଛି ଝଡ଼ର ସଙ୍କେତ
ହିମାଳୟର ଗୁହା ଘୋ ଘୋ କରୁଛି
ବିନ୍ଧ୍ୟଗିରିରୁ ପଶ୍ଚିମ ଘାଟ ପର୍ଯ୍ୟନ୍ତ
ଗର୍ଜିଉଠୁଛି କ୍ରୋଧରେ ;
ମୁଁ କାରାଗାର
ସ୍ୱତ ହରତାଳର ଦାବାନଳରେ ଜଳିଉଠୁଛି
ଜଳିଉଠେ ଦେଶ, ଅଗ୍ନିଗର୍ଭ ଜନତା ;
ନିରୁଦ୍ଧ କୋଠରୀରେ ଗ୍ରୁଢର ପିଞ୍ଜର ପିଟୁଛି
ଚମକି ଧରଉଛନ୍ତି ଦଧୀଚିମାନେ
ଅଧୀର ହୋଇଉଠୁଛି ଦିଗଦିଗନ୍ତ ରୁଦ୍ର ସଂହାରର ତାଣ୍ଡବରେ
ଶୁଣ :
"ଆକାଶ-କୁନ୍ତଳା ଦେଶ ରୌଦ୍ର-ସ୍ନାତ ଭାରତବର୍ଷ
କାହାର ?
ମୋର ।
ବିପ୍ଳବ-ସରଣୀ ବନ୍ଧା ମହାଭାରତର ଦୀର୍ଘ ଉତ୍ତରାଧିକାର

କା'ର ?

ମୋର ।

ତୋର ସର୍ବନାଶ ଆସନ୍ନ ଶୈତାନ୍ !

ମୋତେ ତୃଷାନଳରେ ଦେଇଛୁ କେତେ ବାର—

ମୁଁ ମରିନ ।

ବିଷପାତ୍ରରେ ଚୁମ୍ବନ ଦେଇଛୁ—

ମରିନ ।

ମୁଁ ମାନବସଭ୍ୟତାର ଉଦ୍ଧର ସାଧକ

ମୋର ମୃତ୍ୟୁ ନାହିଁ ।

ଆଜି ତୁମେ ପୁଣି ସେଇ ଦ୍ୱେଷଟାଗୁଡ଼ାକୁ ବୁଲେଇ ଦେଇଛ

ଏଠିକା କାନ୍ଥର ଗହ୍ୱରକୁ,

ଘୃଣ୍ୟ ମାର ପିଠିରେ କଳାଦାଗ ପକେଇଛ

ଜହ୍ଲାଦ ପଠେଇଛ ଗ୍ରାମରେ ଆଣ୍ଠୁମ ଢ଼ିବା ପାଇଁ,

କିନ୍ତୁ ଜାଣି ରଖ୍,

ମୋର ଆପାତ ମୃତ୍ୟୁର ଦାମ ତୋର ଦୁର୍ଦ୍ଦାନ୍ତ ସର୍ବନାଶ ।

ଏଇ ନରହତ୍ୟାର ଯାନ୍ତ୍ରିକ କାରଖାନାର ଦରଜାରେ

ଏଇଟା କାହାର ଅଘାତ ?

ଶୁଣ୍, କାହାର ଶବ୍ଦ ?

ତୋ'ର ମୃତ୍ୟୁର, ମୋ ର ଉତ୍ଥାନର

ମୋର ପୁନରୁତ୍ଥାନର ଦୁନ୍ଦୁଭି ।"

ଶୁଣି ଶୁଣି ବଧିର ହେଇଯିବ ;
ମୁଁ ମୁକ୍ତ ହେବି ;

ଯଦିଓ ମୁଁ ଗୋଲାମ ଜେଲଖାନା ମାଝ
ତଥାପି ଅସହ୍ୟ
ଅସହ୍ୟ ଏଇ ଅଭିଜ୍ଞତା ;
ଜାହାନ୍ନାମ୍‌ର କଳା ଅଗ୍ନିର ଏଇ ଅନ୍ଧକାରରୁ
ମୁଁ ମୁକ୍ତ ହ୍ୱେଁ ;
ତୁମେ ହବୁ ବାହାରେ କଏ ?
କିଏ ତୁମେ ଏ ଦେଶର ମଣିଷ ?
ମୋତେ ଦୟାକର, ମୋତେ ଛାଡ଼ିଦିଅ,
ଏଇ ରେଲ୍‌ଯନ୍ତ୍ରଣାର ଅସହ୍ୟ ଅଚଳାସନରୁ
ମୋତେ ମୁକ୍ତି ଦିଅ ।

# ଯୌବନ

ମୋ ଜୀବନେ ତୁମର ଆବିର୍ଭାବ
ଏକ ତରଙ୍ଗ-ଉଚ୍ଛଳ ସମୁଦ୍ର ଝଡ଼ ପରି ।
ତୁମେ ମୋତେ ଅଧିକାର ଦେଇଛ—
ମାଟିର, ଘରର, ଘାସର, ଫସଲର, ଫୁଲର
ପୃଥିବୀରୁ ମୋ ଝରକା ନିକଟକୁ ଟାଣି ଆଣି କହୁଛ —
ଏଇ ତୁମର ସୁହୃତ୍ ;
ଭଲପାଇବା ଧନ ମୋତେ ଜୋଡ଼େ
ସ୍ନିଗ୍ଧ ମହୁମବତୀ ପରି ଚକ୍ଷୁ ଉପହାର ଦେଇ କହୁଛ—
ଏଇ ତୁମର ସ୍ୱର୍ଗ ;
ମୋତେ ତୁମେ ନରକର ଗର୍ତ୍ତରୁ ଇନ୍ଦ୍ରପୁରୀର ଚୂଡ଼ା ପର୍ଯ୍ୟନ୍ତ
ଅବାଧ ପାଶ୍-ପତ୍ର ଦେଇଛ
ଯୌବନ, ମୁଁ ତୁମଠାରେ ଋଣୀ ।

ଝଡ଼ର କେଶରରୁ ଗୋଟିଏ ସୁନେଲି ବିଦ୍ୟୁତ୍ ତୋଳି ନେଇ
ମୁଁ ଯେମିତି କା' ହାତରେ ଜଡ଼େଇଛୁ,
ରାତ୍ରିର ଛାୟା ପଥରୁ ତାରା ତୋଳିନେଇ
ରଚନା କରୁଛ ଆନ୍ଧୁର ଏକ ଛାୟାପଥ ।

ମୋର ତୃଷ୍ଣା ଥିଲା ଝର୍ଣ୍ଣର
ସେ ଝର୍ଣ୍ଣ ଶୁଖିଛି, ତେଣୁ ମୁଁ ଅତୃପ୍ତ ;
ମୋର ଅଭିମାନ ଥିଲା ବନ୍ଧୁ ତୁର
ସେ ବନ୍ଧୁଟି ଏବେ ବି ମେଘରେ, ତେଣୁ ମୁଁ ଅସନ୍ତୋଷ
ମୋର ଆକାଂକ୍ଷା ଥିଲା ସମୁଦ୍ରର
ସେ ସମୁଦ୍ର ଆଜି ବି କୂପମଣ୍ଡୂକ, ତେଣୁ ମୁଁ କ୍ଷୁବ୍ଧ ।
ମୁଁ ଖୋଜିଥିଲି ଜୀବନର ବସନ୍ତ ଗୁଡ଼ିକୁ ମେଲିଦେବି
ପତାକା-ରଙ୍ଗୀନ ଶୋଭାଯାତ୍ରା ପରି,
ବାନ୍ଧିଦେବି ମନକୁ—ମନର ଉଦାର ପ୍ରସାରି ଆଶା, ଆକାଂକ୍ଷାକୁ
ଗୋଟିଏ ଅବ୍ୟର୍ଥ ବିଦ୍ରୋହ ସଙ୍ଗୀତ ।

ମୋ ହୃତ୍ପିଣ୍ଡର ଅନ୍ଧ ଗହ୍ୱର
ଭାରତବର୍ଷର ବିରାଟ ହୃତ୍ପିଣ୍ଡରେ ଭଣଉଛି ;
ଏଇ ଉପବାସ-କ୍ଷୀଣ ଟିକି ହୃଦୟରେ
ଏତେ ବଡ଼ ଦ୍ୱାପର ସୃଷ୍ଟି କରିଲା କିଏ ? ତୁମେ ?
ମୃତ୍ୟୁର ମନ୍ଥର ସମ୍ଭାର ସ୍ୱପ୍ନରେ ଏଇ ନିପୀଡ଼ନ—ମୋର ସ୍ୱଦେଶ
ଏଇ ବେଦନା କ୍ଷୋଭ ଆକ୍ରୋଶ— ମୋର ଅହଙ୍କାର,
ତେଣୁ ମୋର ହୃଦୟ ଆଜି ଅଗ୍ନିର ପାହାଡ଼
ଭାରତବର୍ଷର ହୃଦୟ ପରି ।

ଯୌବନ,
ତୁମେ କି ଜାଣ, କାହିଁରେ ଢେଉ ଉଠେ ?

ତୁମେ କି ଜାଣ ଯେଉଁ ଚେତ୍ର ପିଠିରେ ନେଇ
କଲକଣ୍ଠ କୁଆର ତା'ର ଘୋଡ଼ା ଛୁଟାଏ ?
ତୁମେ କି ଜାଣ ପାହାଡ଼ ଖାଲି ପାଷାଣ ନୁହେଁ
ଯେ ଗୋଟାଏ ଦୁର୍ଦ୍ଦାନ୍ତ ବାରୁଦ ଘ'ର ନାମ ଆଗ୍ନେୟଗିରି ?

ଯୌବନ,
ଶୁଣିଛି ତୁମ ଆକାଶରେ ଭରି ଦେଇ ମଣିଷ ଦେବଦୂତ ହେଉଛି
ଗିରି କାନ୍ତାର ମରୁ ଡେଇଁ ବେଙ୍ଗମା* ପକ୍ଷୀର ଦେଶେ
ଶୂନ୍ୟକୁ ପକ୍ଷୀରାଜ କରି ଯେ ଛୁଟିଛି,—
ସେ କ'ଣ ଖାଲି କାହାଣୀ ?

କାଶଗୁଚ୍ଛରେ ବନ୍ଧା ତୁମେ ଏକ ଶରତର ଅଫୁରନ୍ତ ଆକାଶ,
ତୁମର ଶୁଭ୍ର ସ୍ନିଗ୍ଧତାରେ ଧୋଇଦେଇଛ ମୋତେ,
ମୋତେ ପବିତ୍ର କରିଛ,
ଲଜ୍ଜା, ଭୟ ଓ ଶିହରଣର କଣ୍ଟକ ଉପରେ
କେବେ ଗୋଟିଏ ନିଷ୍ପାପ ଗୋଲାପ ଫୁଟିଉଠିଛି,
କେବେ ଯେମିତି କୁହେଳିର ପର୍ଦ୍ଦା ତୋଳି
ଝଲକାଏ ଖରା ଆସି ପରି ବଛେଇଦେଇଛି ଘରେ ;
ଯୌବନ, ତୁମେ ମୋତେ ଜୀବନ ଦେଇଛ ।
ମୁଁ ଥିଲି ଅରଣ୍ୟ ଖଦ୍ୟୋତ
ମୋ ର ନିଭୃତ ଅଗ୍ନିରେ ଥିଲା ଗୁଞ୍ଜନ,

* ବେଙ୍ଗମା—ବଙ୍ଗୀୟ ରୂପକଥାର ଏକ ପକ୍ଷୀବିଶେଷ

ତୁମେ ତାକୁ କରିଛ ସଙ୍ଗୀତ, କରିଛ ଧ୍ରୁବତାରା,
ତାକୁ ପଠେଇଛ ଆକାଶର ଚନ୍ଦ୍ରଙ୍କୁ, ଦେଇଛ ଦୀପ୍ତି
ଯା ଆଦର୍ଶ ପରି ସ୍ଥିର, ପ୍ରତ୍ୟୁଷ ପରି ଉଜ୍ଜ୍ୱଳ ।

ଆଙ୍ଗୁଳି ଅଗରେ ଝଡ଼ ତୋଳି ମୁଗ୍ଧ ଶିଳ୍ପୀ ପରି
ଏକ ଅନବଦ୍ୟ ସେତାରକୁ ତୁମେ ମତେଇ ରଖିଛ—
ସେ ସେତାର ମୋ ଜୀବନ ;
ସୁର ତୋଳିଛି ବଜ୍ରୋଦ୍ଗର, ବିଦ୍ୟୁତ୍‌ର, ବନ୍ୟାର—
ସେ ଏକ ଅଦ୍ଭୁତ ସମ୍ମୋହନ ।
ହେ ଯୌବନ, ହେ ଯାଦୁକର, ହେ ମୋର ନେତା,
ଜୀବନର ଉଜ୍ଜ୍ୱଳ ମିଳିତ ଶୋଭାଯାତ୍ରା ହସ୍ତ ମୋତେ ମିଶାଅ
ଯେଉଁ ଶୋଭାଯାତ୍ରାର ଆଦି ନାହିଁ,
ଅନ୍ତ ନାହିଁ ।

ମୋର ତୃଷ୍ଣା ଝଡ଼ର
ସେ ଝଡ଼ ଉଠିନି, ତେଣୁ ମୁଁ ଅତୃପ୍ତ ;
ମୋର ଅଭିମାନ ବିଦ୍ୟୁତ୍‌ର
ସେ ବିଦ୍ୟୁତ ଏବେ ବି ମେଘରେ, ତେଣୁ ମୁଁ ଅଭିମାନୀ ;
ମୋର ଆକାଙ୍କ୍ଷା ସମୁଦ୍ରର
ସେ ସମୁଦ୍ର ଆଜି ବି କୂପମଣ୍ଡୂକ, ତେଣୁ ମୁଁ କ୍ଷୁବ୍ଧ ।

## ମହାଦିଗନ୍ତ

—ତୃତୀୟ ସର୍ଗ—

॥ ମନ୍ତ୍ରଦ୍ରଷ୍ଟାରଃ ॥

ଯୋଗାସନେ ଧ୍ୟାନୀ ନିଉଟନ୍ ।
କଲ୍ୟାଣର ମନ୍ତ୍ର-ରଚୟିତା, କର୍ମେ, ଜ୍ଞାନେ ।
ଏ କାଳର ନବ ଅଙ୍ଗିରସ ଆଇନ୍‌ଷ୍ଟାଇନ୍
ମନ୍ତ୍ର ପଢ଼ି ଶୁଣାଇଲେ—

$mc^2 = e$ (ଏମ୍-ସି ସ୍କ୍ୱାୟାର ସମାନ ଇ)
ମଞ୍ଚଲେ କି ଶକ୍ତିର ବଳୟେ
ଚନ୍ଦ୍ରର ସେପାରେ କମ୍ପ୍ରା ଗ୍ରହ୍ୟାପଥେ
ନେଇଯାଏଁ ତୁମ ଗୂଢ଼ପଥ
ପୁଣି ତୁମରି ହିଁ ବୀଜମନ୍ତ୍ରେ କାଳଜୟୀ ରକେଟ ଚଢ଼'ଏଁ
ସୌରତେଜକୁଁ ଆଣେ ପୁଣି ନବତେଜ, ପରମାଣୁଁ ଭ୍ରୂଣ—ନବଜୀବନର
ସଭ୍ୟତାକୁ ଖଣ୍ଡି ଗଢ଼େ ମୁହିଁ ଅଭିଧାନ
ତୁମ ଧ୍ୟାନ ଜ୍ଞାନ ଆଉ କର୍ମର ମାୟାବୀ ଦୀପ ଜାଳି
ଆଶ୍ଚର୍ଯ୍ୟ ସକାଳ ଆଣେ ଆଶ୍ଚର୍ଯ୍ୟ ସଂସାର ।

ହବୁଠାରୁ ସତ୍ୟ ଉଦ୍ଭାସେ
ଦିଗନ୍ତର ୟୁଟୋପିଆ,
ହବୁଠାରୁ କଳ୍ପନା-ରଙ୍ଗୀନ ମାୟାମୟ
ହବୁଠାରୁ ସାର୍ଥକ ବାସ୍ତବ ।
ଯଦ କେଉଁ ଦେଶ ଥାଏ ଡେଜ ଯାର ନାମ
ଯଦ କେଉଁ ଗଡ ଥାଏ ଇଥରେ ଯା' ସ୍ଥିର
କେନ୍ଦ୍ର ଏବଂ ଚକ୍ରନେମି ସୃଷ୍ଟି ସ୍ଥିତି ପ୍ରଳୟର—
ତେବେ ସେଇ ଅସମ୍ଭବ ବାସ୍ତବ ସତ୍ୟକୁ ଜାଣେ
ତୁମର ହିଁ ଆଳମ୍ବନ ବଳେ,
ତୁମ ଆଡ଼େ ଆଖି ମେଲି କୃତାଞ୍ଜଳିପୁଟେ କହେଁ
'କସ୍ମୈ ଦେବାୟ ହବିଷା ବିଧେମଃ' ।

# ଗୌତମ,
# ଗାନ୍ଧୀ
# ଓ
# ସକ୍ରେଟସ୍

ବାଣବିଦ୍ଧ ଜୀବନକୁ ନେଇ ବସିଅଛ
ନବୀନ ଗୌତମ ବୁଦ୍ଧ ମୂର୍ତ୍ତି
ତପସ୍ୟାତନ୍ମୟ—
'ମୋର ଏ ହଂସ' ।
ମୂର୍ଖ ! ତୁମେ ଦେବଦତ୍ତ, ଘୁଞ୍ଚିଯାଅ
ଏ ମରାଳ ଛୁଇଁବାକୁ ଦେବିନି ମୁଁ କାରେ ।
ତୁମର ନିଃଶ୍ୱାସେ କମ୍ପେ ଡ୍ରାଗନର ହସ .
ଧନୁର୍ବାଣେ ହିରୋଶିମା, ଭ୍ରୂକୁଟିରେ ମନ୍ୱନ୍ତର-ରେଖା
ଜ୍ୟାର ଟଙ୍କାରେ ଶୁଣେ ଆର୍ତ୍ତନାଦ,
ନିର୍ଯ୍ୟାତିତ ମନୁଷ୍ୟର କଠିନ ଯନ୍ତ୍ରଣା ।
ତୁମେ ମୃତ୍ୟୁ ନିର୍ବାପିତ ଦୀପ,
ତୁମର ନରକ-ଗର୍ଭେ ଜଳିଯିବ
ମଣିପଦ୍ମ-ଆରକ୍ତ ଆଲୋକ

ଆବେଗ-ଉଜ୍ଜ୍ୱଳ,
ଏଇ ପଣ ।
ଘୃଣ୍ୟଯାଅ—
ସବୈବରେ ଯିବ ଏଇ ହଂସ ।

ହା ରାମ ! ହା ପିତଃ !
ଏ ମୋର ହୃଦୟେ ଏଇଁ କୁଟିଳ କ ପ୍ରେମର ଆଘାତ ? .
ଯେହେତୁ ଏମାନେ ଅଜ୍ଞ ତେଣୁ କ ଏ କଣ୍ଟକ-ମୁକୁଟ ?
ତେଣୁ କ ଉତ୍ତପ୍ତ ବାୟୁ, ନିର୍ବାଣ ଆଲୋକ ?
କୁଳେ-ଭଙ୍ଗ ଏ ମୋ ର ହୃଦୟ
ନେଇଯିବ ଦିଗନ୍ତର ପାରେ
ମୋହର ଉତ୍‌ଥାନ ଲଗ୍ନେ
ମାଟିର ପୃଥିବୀ ଛାଡ଼ି ଯେବେ
ମୃତ୍ୟୁର ସମୁଦ୍ରେ ମୁହିଁ କଲମ୍ବସ୍,
ମୃତ୍ୟୁଜୟୀ,
ଜୀବନର, ଭୂୟୋ ଜୀବନର ଦୂତ ।
ଜାଣେ ମୃତ୍ୟୁ କେବେ କେବେ ଜୀବନର ବୀଜ, ଅମୃତ ;
ସେହି ମୃତ୍ୟୁ, ସନ୍ଦେହଯ, ଉମର ଗରଳଭାଣ୍ଡ
ଯେଇ ମୃତ୍ୟୁ ପୁଣି ମୋ ପିପାସା—
ମହାକାଶେ ମୋ'ର ଉଲ୍ଲାସ
ମହାକାଳେ ମୋ'ର ପ୍ରେରଣା ।

# ଶାନ୍ତନୁ-ଶ୍ୟାମଳୀ

କଲେଜ୍ ଷ୍ଟ୍ରୀଟ ମୋଡ଼ରେ ସଦ୍ୟ ପାଶ୍‌କରା ବେକାର ଶାନ୍ତନୁ ;
କପାଳେ ଈଶ୍ୱରର ଦୁ'ଢ ମ୍ଳାନ,
ପକେଟ ଅପେକ୍ଷାକୃତ ଅନୁଦାର,
ଦ ଆଖିରେ ଅନ୍ୱେଷ, କାଟୁ ସ୍ତ୍ରାଣ୍ଟର ଦାମ ବା କେତେ ?
ଏଇତ ସେଦିନ ବି କ୍ଳାସରେ "ଟ୍ରାଜେଡି" "କମେଡି" ନେଇ
କେତେ ତଥ୍ୟଯୁକ୍ତି-ଜାଲ ବିଛେଇଛ
କଫି ହାଉସର ଉଷ୍ଣ ଟେବୁଲରେ ତୋଳିଛ ଝଡ଼,
ଆରିଷ୍ଟଟଲ୍‌ଙ୍କୁ ଆନନ୍ଦ ବର୍ଦ୍ଧନ
ଉଦ୍ଧୃତ କରିଛ ଅନର୍ଗଳ,
ଶିଳ୍ପ ଏବଂ ଜୀବନ ମଝିରେ କେତେ ସେତୁ କେତେ ବ୍ୟବଧାନ
ଖୁଣ୍ଟି ନାଣ୍ଟି କରିଛ ବିଚାର
"ରଚନାଟି ଅନବଦ୍ୟ"—କହିଛନ୍ତି ପ୍ରଫେସର ସେନ ;
"ଅନବଦ୍ୟ"—କହିଛି ଶ୍ୟାମଳୀ ଲାଇବ୍ରେରୀ ଦ୍ୱାରେ
ମୃଦୁ ହସି ଭେନିଟି ବେଗ୍‌ର ଷ୍ଟ୍ରାପ୍‌ରେ ଅଙ୍ଗୁଳି ବୁଲେଇ
"ଅନବଦ୍ୟ ଲେଖା" । ଧନ୍ୟବାଦ ଦେବାକୁ ଭୁଲିଛି ଶାନ୍ତନୁ,
ବନ୍ଧୁମାନେ ଈର୍ଷିତ ଆଖିରେ ହସିଛନ୍ତି ଗୋପନରେ ।
ଏଇତ ସେଦିନ ।

ଆଜି ଶାନ୍ତନୁ ବଡ଼ ମ୍ରିୟମାଣ.
ଅନ୍ୟ ଏକ ମଳିନ ଶାନ୍ତନୁ—
କଲେଜ ଷ୍ଟ୍ରିଟ୍‌ର ଫୁଟ୍‌-ପାଥ୍‌ରେ ପୁରୁଣା ମଲାଟଛିଣ୍ଡା ବହି,
ଯେତେ ବି ଓଲଟାଅ, ପୃଷ୍ଠାଗୁଡ଼ା ଧୂଳି.
ତା ତଳକୁ ରେକ୍ସିନ୍‌ର ସ୍ମୃତି, ଖାଲି ସ୍ମୃତି ।
ଗୋଲଦୀଘିର ଜଳରେ ହୁଏତ ଯୌବନର କଞ୍ଚା କଞ୍ଚା ସ୍ୱପ୍ନ
ଏବେ ବି ମାଛ ଧରି ଖେଳେ ।
ଏବେ ବି ଲିଫ୍‌ଟ୍‌ ସାମ୍ନାରେ ହୁଏତ ଝଙ୍କଣା ବାଜେ
ଲାଇବ୍ରେରି ଦ୍ୱାରେ
ଭେନିଟି ବେଗ୍‌ର ଷ୍ଟ୍ରାପ୍‌ରେ ଆଙ୍ଗୁଳି ଘୁରାଏ କେହି—
ଅନ୍ୟ ହାତ,
କେଉଁ ରଚନାକୁ କେହି କହେ 'ଚମତ୍କାର'
ଅନ୍ୟ କେହି ।
ଶାନ୍ତନୁ ବେକାର ଏବେ,
ଜଣ୍ଡିସ୍ ଆଖିରେ ତା'ର ଗୋଟିଏ ଜିଜ୍ଞାସା :
"ଦୟାକରି ଦେଖିବେ କି ସାର୍, ଯେ କୌଣସି ବେତନରେ ଆପାତତଃ…"
ଚାକିରି ଆପାତତଃ ; ପରିହାସ କରେ ସୂରଙ୍ଗ ଚୋର୍
ଚାକିରିର କୋଠରେ, ଆଜି ଚାକିରିର ସାନ୍ତ୍ୱନା.
ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଗ୍ରନ୍ଥ, ଯତ୍ନେ ସଂଗୃହୀତ
ବୁଦ୍ଧ-ସୁନ୍ଦର ବାଣୀ ଶାନ୍ତନୁ କି ଭୁଲିଯାଏ ?
ଶାନ୍ତନୁକୁ ଭୁଲିଛି ଶ୍ୟାମଳୀ ?
ପୁରୁଣା ବହିର ପୋକ—ଶାନ୍ତନୁ—ଦେଖିଛି ଗୃହି

ଗ୍ରନ୍ଥଭୁକ୍ ପୃଷ୍ଠାରେ ପୃଷ୍ଠାରେ
ନାୟକର କୀଟଦଷ୍ଟ ଛବି ଅଦ୍ଭୁତ ଲଗୁଛି ଦେଖି
ଆଲ୍‌ପିନ୍‌ର କ୍ଷତ, ସାରା ମୁହେଁ ।
ଶାନ୍ତନୁ ମନସ୍କ ହୋଇ ଦେଖେ,
ଦେଖେ ଏବଂ ଭାବେ :
କପାଳେ କ୍ଷୁରର ଦାଗ, ଫେରିବାକୁ ହେବ ଘରେ,
ସୁପାରିଶ ପତ୍ର ଲୋଡ଼ା ।
ଦେହସାରା ବ୍ୟଥା, ଦଂଶନେ ଦଂଶନେ ଜାଳିଚନ୍ତି
କୀଟ-ଦଷ୍ଟ ।
ମନେ ପଡ଼େ କେବେ :
କ୍ଲାସର ସଙ୍ଗିନୀମାନେ
ଗାଉଥିଲେ ତ୍ରିପଦୀ ଗୋଟିଏ—
"ଆହା ମରି ମରି
ଶାନ୍ତନୁ ପ୍ରତିଭାବାନ୍
ଶ୍ୟାମଳୀ ସୁନ୍ଦରୀ"

# ଆସିରୁ ଛିନ୍ନ କର

ଘରର କାନ୍ଥରେ ବୁଢ଼େଇ ରଖିଥିଲା ଅନେକ ରଙ୍ଗ
ଏବେ ଆସି ଭିତରେ ମୋତେ ଗୁନ୍ଥିଦେଇଛ ;
ଏଠି ମୁଁ ଅଦେଖା, ଅଭୋଗ୍ୟ, ଅସ୍ପୃଶ୍ୟ,
ତଥାପି ତୁମ ଘ୍ରାଣ, ଆଖିରେ ଆଖି ଯେପରି ନ ପଡ଼େ, ଲାଜ ଲାଗିବ ।

ତୁମର ହାତର କର୍କଶ ଯେବେ ଆଖିରେ ଉକୁଟିଉଠେ, ମୁଁ ସେଇଂପାଇଁ
ସେତେବେଳେ ଭୟ ଲାଗେ,
ହୁଏତ ଆସିର ପରଦା ଟିକକ ଚିରମାର ଦ...
ପୁଣି ମୋତେ ଘରର ଉଠାଣିକୁ ନେଇଯିବ ;
ଆସିର ଜଗତକୁ ମଝିରେ ମଝିରେ ବିଶ୍ୱାସ ହୁଏନା,
ବିଶେଷତଃ ଯେତେବେଳେ ଓଠ ଜଣରେ ଯଦ୍ୟ ଦଂଶନର ଜ୍ୱାଳା ଜନ୍ମଉଠେ,
ଯେମିତି କାୟା ଏବଂ ଛାୟା ଅଭିନ୍ନ ଭେଦାଭେଦ ।

ଶାମୁକା କେବେ ମୁକ୍ତା ଦେବ, ଆକାଶ କେବେ ମଧୁମାସ ଆଣିବ,
କେହି ଜାଣେନା ।

ମୋ ଭିତରେ ତୁମର ବ୍ୟଥା କେବେ ଅନୁରୂପ ହେବ,
କେବେ ତୁମେ ମୋତେ ଏକାନ୍ତରେ ଚାହିଁବ, କେହି ଜାଣେନା ।
କେହି କହି ପାରେନା କେବେ ଆମେ ଶରୀର, କେବେ ବା ଅଶରୀର
କେବେ ଆମେ ଚାହାନ୍ତ, କେବେ ବା ଚାହାନ୍ତନ୍ତ ।

ଏଇ ମୁହୂର୍ତ୍ତରେ ହୁଏତ ମୋତେ ଛିନ୍ନ ଭିନ୍ନ କରିବ,
କିନ୍ତୁ ଜାଣେ ଠିକ ପରକ୍ଷଣେ
ପୁଣି ମୁଖେ ମୁଖେ ଶ୍ଳୋକ ପରେ ଶ୍ଳୋକ ରଚନା କରି
ମୋତେ—କୁକୁର ମୁଖର ମାଂସ ଖଣ୍ଡକୁ—ଚାଟିବ
ଯେମିତି ତୁମର ଆକାଶଲକ୍ଷ୍ୟ ସ୍ୱପ୍ନ ଛଡ଼ା ମୋର କୌଣସି ଅବୟବ ନାହିଁ,
ଯେମିତି ମୋର କଟିଦେଶରେ କେବେ କେଉଁ ଅଦମନୀୟ ଇପ୍‌ସା ନ ଥିଲା,
ଯେମିତି ଓଠର ଆଘାତରେ ମୋତେ କେବେ ଅବାଙ୍ମୁଖ କରିନା
ଯେମିତି ସେପ୍‌ଟେମ୍ବର-ଅକ୍ଟୋବରରେ କେହି ମୋର ଲକ୍ଷ୍ୟ
ଭେଦ କରିନି,

ମୋର ଅଷ୍ଟାଦଶର କୋକିଳ ଉଦ୍ଭିନ୍ନ ସ୍ନାୟୁ ମଧ୍ୟରେ
ଯେମିତି କେବେ ଗୀତ ଗାଇନି !
ମୋର ଚାରିପାଖରେ ଅନେକ ଅନ୍ଧାର ସୃଷ୍ଟି
କାଳଚକ୍ର ବୃତ୍ତରେ ବୃତ୍ତରେ ମୋତେ କେବଳ ଆସରୁ ଛିନ୍ନ କରି
ପୁଣି ଆସି ଭିତରକୁ ଠେଲିଦେଉଛି ।
ମୋତେ ନଗ୍ନ କରୁ କରୁ ଯେତେବେଳେ ଆଉ କୌଣସି ଆବରଣ ନାହିଁ
ଆଖି ଢାଙ୍କି ଯେତେବେଳେ ଦୁଇହାତରେ ବାହୁଯୋଗ୍ୟ ଦେହକୁ
ଟାଣି ଛିନ୍ନ କରି

ପୁଣି "ନୂହଁ-ବଧୂ-ଉତ୍କଣ୍ଠା" ଆସରେ ମୋତେ ନିକ୍ଷେପ କରୁଛି ।
ସ୍ମୃତିରୁ ଉପାଡ଼ି ନେଇ ଗନ୍ଧସ୍ୟଳ ଦେବାଚଖାରେ ଝୁଲାଇଦେଉଛି ।

ଏ ମୁହୂର୍ତ୍ତରେ ମୁଁ କେବଳ ଉପ୍ସାର ଧୂମ୍ରଳାପ,
କିନ୍ତୁ ତା'ପରେ ପୁଣି ସ୍ମୃତିର ଝାଉଁଳ ଏବଂ ଅନେକ ସ୍ମୃତି ଏବଂ
ଶାମୁକା କେବେ ମୁକ୍ତା ଦେବ, ଆକାଶ କେବେ ମଧୁମାସ ଆଣିବ,
କେବେ ଜାଣେନା ।

# ଦେବଦାରୁ ଓ କୃଷ୍ଣଚୂଡ଼ାର ଶୋକେ

କୁଠାରେ କୁଠାରେ ଛିନ୍ନ, ମୁଁ ଆଜି ଅଫିସ ପିଅନ :
ରକ୍ତାକ୍ତ ଏକ ଦାରୁର ଭଗ୍ନାଂଶ ମୁଁ ଆଜି,
ମୁଁ ଆଜି ଅସୁସ୍ଥ, ମୁଁ ଆଜି ଅଫିସ ପିଅନ ।

ଡୋଭର ଲେନ୍‌ର ସେଇ ପଡ଼ିଆଟା ପାର ହେବାକୁ ଯାଇ
ମୁଁ ଆଜି ବାକ୍‌ଶୂନ୍ୟ, ପଙ୍ଗୁ ହୋଇଯାଇଛି ।
ଯେ ପ୍ରାନ୍ତରେ ଦେଖିଛି ମୁଁ ଅନେକ ସଭାର ତାର
ଏ ମୁହୂର୍ତ୍ତେ ସେ ପ୍ରାନ୍ତର ନିତାନ୍ତ ଅନାଥ—
ଇତସ୍ତତଃ ଛିନ୍ନଶାଖା ଛିନ୍ନକାଣ୍ଡ, ଶୁଷ୍କ,ଶାବସ୍ଥାନ ।
ମୁଁ ବି ଅନାଥ,
ଛିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ଆଦ୍ୟ ଅଂଶୀଦାର
ଦେବଦାରୁ କୃଷ୍ଣଚୂଡ଼ା ସ୍ତୂପୀକୃତ ଶବେ---
କି ଯେନ ମୁଁ ପିବ ?

"ଯାଅ, ଫେରିଯାଅ, ପରଶୁରାମର ଦଳ, ତୁମେ ସବୁ ଫେରିଯାଅ"
ବୃଥା ଉକ୍ତି·ମୋର ।
କେ ଶୁଣିଛି ? କେ ଫେରିଛି ?

ଦାୟିତ୍ୱହୀନ ଆତତାୟୀ
ବିବେକର ଶେଷ ଦଂଷ୍ଟ୍ରା କାଟିଛି ଜଗତେ ।

ମୃତ ଦେବଦାରୁଟିର ଅନ୍ତିମ ଯନ୍ତ୍ରଣା
ଶୋଇଛି ମୋ ଆତ୍ମାର ଅଙ୍ଗନେ
ଅଶଷ୍ଟିଷ୍ଟି ଅବ୍ୟକ୍ତ ଅବୋଧ ;
ହୃତ୍‌ପିଣ୍ଡ-ମୂଳ ମୋ ଏଇ ନିଦାଂଷ୍ଟ୍ରି ଫଳକେ ।

କୃଷ୍ଣଚୂଡ଼ା ଶବଟିକୁ ନେଇଗଲେ ବିଶାଳ ଶକଟରେ
ରକ୍ତର ଦର୍ପ ମଧ୍ୟରେ ଅନ୍ତିମ ଶାୟିତ
ଆତ୍ମା ତାର ଏ ମୋର ଆତ୍ମାର ମଧ୍ୟେ,
ଶେଷ ଶୀର୍ଣ୍ଣ ମୁଖ ତା'ର ମୋ ମୁଖର ଛଦ୍ମେ
ରହିଛି ମୁଦ୍ରିତ ।

ଦୁଃସ୍ଥ ମୁଁ, ନିତାନ୍ତ ଅସୁଖୀ ମୁଁ,
ମୁଁ ଆଜି ଅଶିବ ନିର୍ଜନ ।

# ପାର୍କଷ୍ଟ୍ରୀଟର ଷ୍ଟେଚ୍

ପାର୍କଷ୍ଟ୍ରୀଟ୍‌ର ମୋଡ଼ରେ ଯେମିତି କିଏ ଡାକିଲା
ମୁଁ ସ୍ପଷ୍ଟ ଶୁଣି ପାରିଲି: "କୁଆଡ଼େ ?"
କିନ୍ତୁ କାହାକୁ ଦେଖିଲିନି ।

ଖୁବ୍ ଜୋରରେ ବ୍ରେକ୍ କଷିଲି
ଜୋତାଟା କ୍ଲଚ ଉପରେ ଟିକିଏ ଘଷିଲି—
ନା, କେହି କୁଆଡ଼େ ନାହାନ୍ତି ।
ଆର୍ଶି ଭିତରେ ପଛରେ ସେକ୍ସପିଅର ସରଣୀ ପର୍ଯ୍ୟନ୍ତ
ପିଚ୍ ରେଖା ଛଡ଼ା କିଛି ନାହିଁ ।
କିନ୍ତୁ ସିଟ୍‌ରୁ ଉଠିଲିନି ।
ଧୀରେ ଧୀରେ ପୁଣି ଗିଅର୍ ଗୁଞ୍ଜିଲି ।
କାହାକୁ ଦେଖିଲିନି,
ଖାଲି ନିଜକୁ ପଚାରିଲି: "କୁଆଡ଼େ ସତେ ?"

ମ୍ୟୁଜିୟମ ସାମ୍ନାରେ ଜଣେ ଯେମିତି ଘୋଡାଏ ଅଯାଡ଼ି ହୋଇ ପଡ଼ି
ରହିଛି ବୋଧ ହଉଛି ।

ପୁଣି ଖୁବ୍ ଜୋରରେ ବ୍ରେକ୍ ଘୃପିଲି, ପଛରେ—
ନା, ତା ନୁହେଁ, ଦେବଦାରୁର ଦୀର୍ଘ ଛାୟା ।
ପୁଣି ସେମିତି ଜଏ ଡାକିଲା
ମୁଁ ସ୍ପଷ୍ଟ ଶୁଣିପାରିଲି : "କୁଆଡ଼େ ?"

ଏଥର ସ୍ପୀଡ୍ ବଢ଼େଇଲି
ଖୁ-ଉ-ବ୍
ଅପସୃୟମାଣ ମୋର ଦୁଇପାର୍ଶ୍ୱ ଝାପ୍ସା ହେଇ ହେଇ ଏକଦମ
ଅସ୍ପଷ୍ଟ ହେବା ଅବଧି ।
ତା'ପରେ, ସେଇ ଗାଡ଼ି ମୋତେ ଗଡ଼େଇ ନେଲା ଘୂରେଇଲା ଧନଯାକ
ପାର୍କଷ୍ଟ୍ରୀଟରୁ ଷ୍ଟ୍ରାଣ୍ଡ, ଷ୍ଟ୍ରାଣ୍ଡରୁ ବଜବଜ୍,
ପୁନଶ୍ଚ ଷ୍ଟ୍ରାଣ୍ଡ, ପୁନଶ୍ଚ ଏସପ୍ଲାନେଡ୍, ପୁନଶ୍ଚ ମ୍ୟୁଜିୟମ.
ଖୁବ୍ ଜୋରରେ ପୁଣି ବ୍ରେକ୍ ଘୃପିଲି

ଜଏ ସେମିତି ଡାକିଲା ।
"କିଏ ?" ମନେ ମନେ ଚିତ୍କାର କରି ଉଠିଲି ।
କେହି ନା ।
ଷ୍ଟାର୍ଟ ଦେବାକୁ ଯାଉଛି, ଦେଖିଲି—
ଏକ ବୁଢ଼ା । ଖାଲି ଗୋଡ଼, ହାତରେ ଗୋଟାଏ ଠେଙ୍ଗା,
ଠିକ୍ ପାର୍କଷ୍ଟ୍ରୀଟ ମୋଡ଼ରେ ଷ୍ଟେଚୁ ପରି ଠିଆ ।

ତା'ପରେ ସମଗ୍ର ବଙ୍ଗ, ସମଗ୍ର ଭାରତବର୍ଷ,
ନୂଆଖାଲିରୁ ସାବରମତୀ,
ଗାଡ଼ିରେ, ଟ୍ରେନରେ, ଏରୋପ୍ଲେନରେ ଛୁଟି ଛୁଟି ଧାଉଁଛୁ,
ଆଉ ସେଇ ଷ୍ଟେଚୁ ପରି ଲୋକଟା ଖୁଣ୍ଟ ପରି ଠିଆ ହୋଇ
ମୋର ସ୍ପିଡୋମିଟରକୁ ଲଜ୍ଜା ଦେଉଛି,
ଉଡ଼େଇ ନେଇ ଘୂରେଇଛୁ ଏ ପଥରୁ ସେ ପଥ
ପାର୍କଷ୍ଟ୍ରୀଟରୁ ବଜ୍‌ବଜ, କଲିକତାରୁ ଦିଲ୍ଲୀ,
କାମରେ ଅକାମରେ
ନ୍ୟାୟ-ଅନ୍ୟାୟ-ନିୟମ-ଅନିୟମର ଉଦ୍ଭଟ ପଥରେ
ଛୁଟି ଛୁଟି କେବଳ ଶୁଣିଛୁ—"କୁଆଡ଼େ ଯାଉଛ ?"
ଆଉ ଖାଲି ବ୍ରେକ୍ ଚିପିଛୁ ।

ସେଇ ବୃଦ୍ଧ, ଖାଲି ଗୋଡ଼, ହାତରେ ଗୋଟାଏ ଠେଙ୍ଗା,
ସବୁଠି ଷ୍ଟେଚୁ ହୋଇ ଠିଆ ।

ସତେ, କୁଆଡ଼େ ଯାଉଛି ମୁଁ ?

## ପରଦିନ ·

ମୋ ମୃତ୍ୟୁର ପରଦିନ ·
ଆକାଶଟା ଝଲକୁଲ ଅପରାଜିତା-ନୀଳ—
ଯେମିତି କେବେ ବି ଝଡ଼ ଉଠିନି, ଧୂଳି ଉଡ଼ିନି,
କ୍ଷେତଭରା ନାଲାବଣ ଆଉ ଗହମର କେଣ୍ଡା,
ତୋଟାଠେଲା ଅମ୍ବ ଆଉ ସପୁରି
ଦାନ ଗୋଟାକରେ ପୃଥିବୀଟା ଯେମିତି ଓଲଟିଯାଇଛି ;
ଗାଈର ଏତେ ଦୁଧ, କୁଅ ଜଳରେ ଏତେ ସ୍ୱାଦୁ,
ଦିନରେ ଏତେ ଆଲୋକ, ରାତିରେ ପୁଣି ଏତେ ସୁଖ !
ଏସବୁ ଯେମିତି ମୋତେ ଜନ୍ଦ କରିବା ପାଇଁ ।

ମୋ ମୃତ୍ୟୁର ପରଦିନ
ପୃଥିବୀ ଦିନ ଗୋଟାକରେ ଓଲଟିଯାଇଛି !
ଦେଶର ଜୀବନ ଗାଡ଼ିଟା କେମିତି କେଜାଣି
ଆପେ ଆପେ ଷ୍ଟାର୍ଟ ହୋଇଛି ।
ନଈରେ ଏତେ ମାଛ, ଜନ୍ମରୁ ବି ଦେଖିନି ।
ବେଙ୍କ୍‌ରେ ଏତେ ଟଙ୍କା ! ଗଣି ଶେଷକର ହୁଏନା ବାବା !
ଏବଂ ଦୋକାନରେ, ସତେ ଆପଣ ବିଶ୍ୱାସ ମଣିବେ, କେତେ କ'ଣ
ଅଛି !

ମୋ ମୃତ୍ୟୁର ପରଦିନ
କବୁତର ଉଡ଼ିଯାଇଛି ଦିଗରୁ ଦିଗନ୍ତ, ସମୁଦ୍ର ସେପାଟରେ—
ପୂର୍ବେ, ପଶ୍ଚିମେ, ଉତ୍ତରେ, ଦକ୍ଷିଣେ, ଚେଙ୍ଗଓ ଚେୟୁଭ ପଣ,
ଏ ଦେଶର ବାଇଶି ସେ ଦେଶର ଏକୋଇଶି ଧାଡେ ଦୁଦସ୍ଥ ଥାପି
ଏବଂ ଏସବୁ ଏସବୁ କିଛି ମଗାଇ ଥିଲି ଯେ ଅବଧି ମୁଁ ଥିଲି ଜୀବିତ
ଯେମିତି କେହି ମଧ୍ୟର-ମୁଦ୍ରାକର ନିମନ୍ତ୍ରଣ ପତ୍ର ସେମାନେ କମୋଡ଼ କରି
ପକେଇ ରଖିଥିଲି ମୋତେ ବାଧ ଦେବ ବୋଲି,
ଏବଂ ମୋ ମୃତ୍ୟୁର ଠିକ ପରଦିନ ଜାବୁରର 'ପିଣ୍ଡ-ଅର୍ଦ୍ଧର' ଦେଇ ଦେଉଛି ।

ସେଇଦିନ ମୋର ମୃତ୍ୟୁ, ସେଦିନ
ଖଣିରେ ବିସ୍ଫୋରଣ, ଶୀଘ୍ରବତର ଶୁଣ୍ଡରେ ନାମିଗ୍ନ ଓଲଟ ପାଲଟ,
ଟାଙ୍କିରେ ଟୋପାଟିଏ ବି ଜଳ ନାହିଁ ନେମନ କରେଣ୍ଟ ଅଫ୍ ।
ଟେଲିଫୋନ ଡେଡ୍, ପଙ୍ଖା ଅଚଳ,
ଯେମିତି ଗୋଟା ସଂସାରଟା ଯାକରେ ଲୀଳାବନ୍ତ,
ହାର୍ମୋନିୟମର ଗଡ଼୍ଗୁଡ଼ାକ ଟଣା ଦେଇ ଉପୁଡ଼ିପଡ଼ିଛି ।
କେଲେଣ୍ଡରର ଛ-ଏ-ଡ଼ି-ଜା ଓଲଟପାଲଟ,
ଏବଂ ଜାମାର ବୋତାମସବୁ ଅଦୃଶ୍ୟ
ମନେ ହେଲା ବଞ୍ଚି ରହିବାଟା ନିରର୍ଥକ ।

କିନ୍ତୁ ଠିକ ପରଦିନ
ପୃଥିବୀଟା ଏତେ ବଦଳିଯିବ ବୋଲି କିଏ ଜାଣିଥିଲା ?
ପରଦିନ ପୃଥିବୀକୁ ଜନ ଜଗିଛି ବୋଲି ଠିକ ଉତ୍ସବିତ ହେବାକୁ ଯାଉଛି

ହଠାତ୍ ପୋଖରୀରେ ଜାଲ୍ ପଡ଼ିବାର ଶବ୍ଦ,
ଡ୍ରଇଂ ରୁମରେ ମେଣ୍ଡୋଲିନ୍ ବାଜୁଛି,
ଡାଲହାଉସି ପାହାଡ଼ର ଗୃ-ଝଟିରେ ବନ୍ଧୁମାନେ ଜମାଟ ବାନ୍ଧୁଛନ୍ତି
ଏବଂ ଟେଲିଭିଜନ୍‌ରେ ପାଇମା ବେଲେଶନାଚ ଢଲବାହାର ନାଚ !

ମୋର ମୃତ୍ୟୁର ଠିକ ପରେ
ପୃଥିବୀଟା ସତେ ଏମିତି ଓଲଟିଗଲା, ଆଶ୍ଚର୍ଯ୍ୟ !
ଏବେ ଏଠି ଆଲୁଅ ତ ସେଠି ଉତ୍ସବ,
ଇସ୍, ଖାଲି ଭଲ ଆଉ ଭଲ—ଭଲ ଆଉ ଭଲ—
ଭଲ, ଭଲ, ଭଲ···ଆହୁରି ଭଲ···
ଆକାଶର ମେଘଗୁଡ଼ା ନାଚୁ ମୂଳରେ ବଗଲିତ
ସବୁଗୁଡ଼ା ଗଛ ଡାଳ ଗ୍ଲାଡ଼ିଛନ୍ତି । ଏବଂ ଡାଳ ଖିଞ୍ଚି ଫୁଲରାଂ· ଘସର
ଗଛରେ ଗଛରେ ଫୁଲ, ପୁଣି ଫୁଲରେ ଫୁଲରେ ମହୁ ।
ଅଃ, ମର ଯା, ଭୁଲ ମୁଁ କରିଛୁନା, କିଏ କହନ୍ତ ?

ଭାବିଥିଲି, ମର ନଥିବ ।
ପୃଥିବୀଟାର ମୁହଁରେ ଏତେ କଷ୍ଟର ଦାଗ ପିଠିରେ ଭାର ଏତେ ବଲାଚଠ
ରାସ୍ତାରେ ଜମାଗଡ଼ କଣ୍ଟା ଏବଂ ଲକ୍ଷ୍ୟ ଦୁରନ୍ତ ;
ଘରଆଡ଼େ ନିଷେଧ ଓ କଣ୍ଟାତାର ; କ୍ଷୁଧାର୍ତ୍ତର ଥାଳରେ ଶୂନ୍ୟ ଥାଳ
ଏବଂ ଆଖିରେ ଦୁଃସ୍ୱପ୍ନର କଙ୍କାଳ-ନୃତ୍ୟ ।
ମୁଁ ଟିକିଏ ଶୋଇବାକୁ ଚାହିଁଥିଲି,
ବଉଳଗଛ ତଳେ ସାମାନ୍ୟ ଟିକିଏ ମାଟିର ଆରାମ,
ଟିକିଏ ବଞ୍ଚିବ !

କିନ୍ତୁ ମୋ ମୁଖର ପରିଧାନ
ବିଶ୍ୱାସ ହୁଏନା ଯେ ପୃଥିବୀଟା ବିଲକୁଲ ଓଲଟିଯାଇଛି ।
ନିଜ ହାତରେ ତିଆରି ପାଟେଣ୍ଟଧେରି କୋଠାଟା ଯେମିତି ଅନ୍ୟ କାହାର
ମୁଁ ଥିଲି—ଯେମିତି କେହି ନୁହେଁ !
ଏଇ ଯେ ଫୁଲଦାନୀରେ ରଙ୍ଗୀନ ସ୍ତବକ, ଫାଟକରେ ସ୍ୱାଗତମ-ଶାନାଇ
ସକାଳର ଟେବୁଲରେ ବଟର ସ୍ଲାଇସ ଟେଲଫ ଏବଂ ଓଲକୋବି ଭଜା,
ଅତିଥିଙ୍କ ପାଇଁ ସରଭଜା,
ବନ୍ଧୁଙ୍କ ପାଇଁ କ୍ରୀମ କଫି, ସ୍ମଞ୍ଜି ପୁଡ଼ିଂ ଓ ମଟରଛୁଇଁ ଶିରୁଡ଼ି,
ମଧ୍ୟାହ୍ନରେ ମନମାଫିକ ଖରିଆନ ବା ବାସ୍ନା ଚାଙ୍ଗୁଡ଼ିର ପଲଉ
ଏବଂ ମୋକ୍ଲାରଟିକାର ଧୂଆଁ !
ଏଇଟା ସ୍ୱପ୍ନ ନା ମାୟା ?

ମୋ ମୁଖର ପରିଧାନ
ପଡ଼ାର କୃଷ୍ଣଟା ବି ସିଂହଦ୍ୱାରଢ଼ି ଗୁଡ଼ୁଛି.
ଗାଡ଼ି ବାରଣ୍ଡାରେ ନହବତ,
ନୂତନ ଯୌବନର ଦୂତମାନଙ୍କର ଭିଖାଲି ଯେମିତି
ମାଧବୀ ଲତା ତଳେ—
ଏଇମାତ୍ର ଆସିଥିବା ଫାକ୍ଟରପ୍ରସୂତ ବାଦାମୀ ରଙ୍ଗର ଫିଆଟ,
ହର୍ଣ୍ଣରେ ତାର ନିବିଡ଼ ଆହ୍ୱାନ,
ଏରିଏଲରେ ଦୂର ସୈକତର ସ୍ୱର,
ହେଡଲାଇଟରେ କୁହେଳୀ-ଭେଦୀ ଆକାଙ୍କ୍ଷା ।
ଏବେ ନାରୀମାନଙ୍କ ସୁନ୍ଦରୀ, ତନ୍ୱୀ । ବନ୍ଧୁସ ମାନଙ୍କ ଯୌବନ

ଫୁଲ-ଫୁଟିବାକୁ-ଭୁଲମ୍ସ ଏମିତି ବଗିଚ୍ଚ ଆଖିରେ ପଡ଼େନା, ଏବଂ
କାଲେଣ୍ଡାରରେ ସବୁ ତାରିଖ ଲାଲ।

ମୋ ମୃତ୍ୟୁର ପରଦିନ

ପୃଥିବୀର ଏଇ ପରିବର୍ତ୍ତନଟା ଯେମିତି ମୋତେ ଜବ୍ଦ କରିବା ପାଇଁ ।
ମୋର ସେଇ ଯୋଦ୍ଧା ଜୀବନଟା ପାଇଁ ଏବେ ବଡ଼ ମାୟା ହୁଏ ।
ସେଇ କଳାଙ୍କିତ ଦାଗ- ଗୋଡ଼ରେ ବେଡ଼ି ସ୍ମୃତିରେ ଶବ୍ଦ ଚୌରାଳିଶ,
ଫୁଟପାଥିରେ କମ୍ବଳଘୋଡ଼ା ରାତି,
ଏବଂ ଫେନ୍ ଖୋଜି ନ ପାଇବାର ଜ୍ୱାଳା,
ସେସବୁ ଅସହ୍ୟ ପୃଥିବୀକୁ ଯେମିତି କେହି ସ୍ୱାଭାବିକ ଗ୍ରୁମ୍ କରିଛି
ମୋତେଇ ଜବ୍ଦ କରିବ ବୋଲି ।
ଏବେ ଈର୍ଷ୍ୟାର ସ୍ୱପ୍ନରେ ପୁଣି ଥରେ ମରେ, ଏଇତ ତାଙ୍କର କାମନା
ମରି ଭୁଲ୍ କରିଛୁ, ଏବେ
ବଞ୍ଚି ଆଉ ଥରେ ଭୁଲ କରିବାକୁ ଚାହେଁ ।

# ଦ୍ୱିତୀୟ ଜନ୍ମ

ମୋ ପରି ଆଉ ଜଣେ ଏଇବାଟ ଦେଇ ଗ୍ଭଲିଯିବ
ଠିକ୍ ମୋ'ରି ପରି, ହୁଏତ ସ୍ୱୟଂ ମୁଁ,
ମୋର ସ୍ୱପ୍ନଗୁଡ଼ିକୁ ମଚ୍ଚରକୁଣ୍ଡି-କଆଁଫୁଲ ତୋଳିନେବ
ଏବଂ ବେଲଓଳି ବୋଗେନ୍‌ଭିଲିଆ ପତ୍ରରେ ସିନ୍ଦୂର ଛିଟା ଦେବ,
ମେଘସବୁକୁ ନଗାଡ଼ି ବନେଇବ ଏକ ଧାରା-ଶ୍ରାବଣ
ଯେମିତି ଏକ-ଉରୁର ଦୁଧ, ଫେନିଳ ଗିପାମାର ଉତ୍ତର ।

ମୋ ପରି ଆଉଜଣେ ଏଇବାଟ ଦେଇ ଗ୍ଭଲିଯିବ,
ଠିକ୍ ମୋ'ରି ପରି, ହୁଏତ ସ୍ୱୟଂ ମୁଁ,
କେଉଁ ଏକ ଦ୍ୱୁଦର ମଧ୍ୟରେ ମୁଖ ତାର କୁହେଲି-ନଷ୍ଟିଲୁ
ପକେଟରେ ଅଶୋକ ମୈତ୍ରଙ୍କ ରଙ୍ଗୀନ୍ ଏକ କବିତା ପରି,
ଲାଇନୋରେ ଏଇମାନ ମୁଦ୍ରିତ ତଟକା ତେଇଶଟି ବର୍ଷ ଅବା ।
ତାଙ୍କର କଣ୍ଠ ଗୁହରରେ ମନ୍ତ୍ରପରି ଉଚ୍ଚାରିତ ନାମ, କୁହୁକ—
ତା ସହିତ କେବେ ମୋର ସାକ୍ଷାତ ହେବନି ।
ଯେ ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ,
ମୋତେ ଉପହାସ କରିବ, ମୋର ଦୁଆ ଦେବ, ଯା'ପାଖରେ ମୁଁ
ପରାଜିତ ହେବି ବୋଲି ଅନେକ କଷ୍ଟ କରିଛି
ଆଗେ ଜନ୍ମିଛି ।

ମୋ ପରେ ଆଉ ଜଣେ ଏଇବାଟ ଦେଇ ଚାଲିଯିବ,
ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ,
ଯେବେ ମୁଁ ଈଶ୍ୱରଙ୍କ ପରି ଅନାମ, ନିରାକାର, ଅବାଙ୍‌ମନୋଗୋଚର ।
ତା'ଏଷ୍ଟରେ ବନ୍ଧୁ, ବନ୍ଧୁର ଲୋକଟକୁ, ଦେଖିଓ ଖୋଲି ଉଦାସୀନ ମୁଖ
ଝରଣା କଲମ, ବମୂର୍ତ୍ତିଶିଳ୍ପ, ବେହେଲା,
ସ୍କାଇସ୍କ୍ରେପର, ଶଙ୍ଖଚଲ, କବୋଷ୍ଣ ନଦୀ,
ଗ୍ରୀଷ୍ମକାଳୀନ ଗୁଲମୋହର ଏବଂ ପ୍ରସ୍ଫୁଟିତା ନାରୀ,
ଏବଂ ସେଇ ଅନ୍ୟ ଜଣକ, ଯାହା ସହିତ କେବେ ମୋର ସାକ୍ଷାତ
ହେବନି ।

ମୋ ପରେ ଆଉଜଣେ ଏଇବାଟ ଦେଇ ଚାଲିଯିବ,
ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ,
ତାର କୋଠାରେ ଫିତା ନାହିଁ ଯେ ମୁଁ ଖୋଲିବି,
କପାଳରେ ଛାପ ନାହିଁ ଯେ ମୁଁ ପୋଛିବି ;
ତା'ର କଣ୍ଠସ୍ୱର ମୋର ଶୁଶ୍ରୂଷା, କିନ୍ତୁ ମୁଁ ଶୁଣି ପାରିବନି ;
ଆକାଶର ଅବାକ ତା'ର ଆଖିରେ, ମୋରି ପରି ;
ବର୍ଷାର ଅଜସ୍ର ଜଳ, ଶରତର ଧଳା-ଟିପିଟିପି-ମାଳ,
ଆଉ ମାଟିର ଅଗାଧ ଶାନ୍ତି ସେ ବି ପାଇବ ;
ତଥାପି ମୋର ଓ ତାର କଣ୍ଠ ମଧ୍ୟରେ ଏକ ବିରାଟ ଜଳ ପ୍ରପାତ
ଯାହା ଶବ୍ଦକୁ ଅନ୍ଧ କରେ ।

ମୋ ପରେ ଆଉ ଜଣେ ଏଇ ପଥ ଦେଇ ଚାଲିଯିବ ।
ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ,

ମୋ ଭିତରେ ଶଙ୍କରୀ ମୋର ଆନନ୍ଦ ଗୁଣ୍ଡିକ
ଝରକା ଦେଇ ଛୁଟିଦେବ, ବାଟକୁ ହେମନ୍ତ କରି,
ମୋର ମଧୁଯାମିନୀର କଣ୍ଟେ ପିଆଲା
ଖପୁରିଲା ପରି, ଶୁଙ୍ଘି ଟିକି ଟିକି କରିବ,
ସେଇ ଉଦ୍ଧତ ମଣିଷଟିକୁ ମୁଁ ଭଲପାଏଁ,
କିନ୍ତୁ କେବେ ତାର ସାକ୍ଷାତ ମୁଁ ପାଇବିନି ।
ତା ଠାରେ ପରାଜିତ ହେବାର ସାକ୍ଷାତ ସୁଯୋଗ ମୁଁ ପାଇବିନି ।

ମୋ ପରି ଆଉ ଜଣେ ଏଇ ବାଟ ଦେଇ ଚାଲିଯିବ,
ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ ।
କଟଲେଟ ଅଣ୍ଡା ହେବ, ଲହୁଣୀତକ ଢଳିବ,
ଏବଂ ମୋର ଉଠିବାର ସମୟ ହେବ,
କିନ୍ତୁ ସେଇ ଅନ୍ୟ ଜଣ୯ ଆହୁରି ଅନେକ ପରେ ଆସିବ ।
ସେତେବେଳେ ଭରିଉଠିବ ପିଆଲା,
ଭିଡ଼ କରିବେ ଫଗୁଣର ଧଂସ୍ୱଗଣ, ଖଇ ଫୁଟିବ ଓଠରେ ।
ମୁଁ ସେତେବେଳେ ସମାଲୋଚନାର ଶରବ୍ୟ, ଅଲକ୍ଷ୍ୟ,
ଦେଖିବିନି, ଜାଣିବିନି, ଶୁଣିବିନି ।

ମୋ ପରି ଆଉଜଣେ ଏଇବାଟ ଦେଇ ଚାଲିଯିବ,
ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ,
ମୋର ଏଇ ବୋଗେନଭିଲିଆ, ଶ୍ରାବଣ ଏବଂ କାଜୁବାଦାମ
ତାକୁ ସୁଖ ଦେବେ, ସ୍ୱାଦୁ ଦେବେ,

ଆକାଙ୍କ୍ଷାରୁ ଆକାଙ୍କ୍ଷାଙ୍କୁ ଟାଣିନେଇ
ଦଣ୍ଡଧର କରତୋଳିବେ, ମୋର ପରି ।
ତାର ଅନାଗତ ସ୍ୱେଦ ମୋ, ମୁହଁରେ
ତା ଦୁଃଖରେ ମୁଁ ଦୁଃଖୀ,
କାରଣ ଯେ ମୋ, ପରି ଆଉ ଜଣେ,
ହୁଏତ ସ୍ୱୟଂ ମୁଁ ।

# ମୋତେ ଅନୁବାଦ କର

ମୋତେ ଅନୁବାଦ କର—କେହି, ଯେ କେହି ;
ମୋତେ ପୋଷ ମନାଅ—କେହି, ଯେ କେହି ;
ମୋତେ ଅପମାନ କର ।
ମୋ ଭିତରେ ଗଜେଇଥିବା ଶିଙ୍ଗକୁ କେହି ମୋଡ଼ି ବଙ୍କା କର,
ଆଉ କବିତାର ବେକରେ ଫାଶୀ ଦିଅ ।

ମୋତେ କେହି ନିଲାମରେ କିଣି ନେଇ ପାଣି ଦାମରେ ବିକି ଦିଅ,
ପ୍ରତିପନ୍ନ କର—ମୁଁ କିଛି ନୁହେଁ ;
ଦୁଇ-ପ୍ରହର-ଉଚ୍ଚ ସୂର୍ଯ୍ୟକୁ ସାକ୍ଷୀ ରଖି
ଦ୍ରୁତ-ନଗ୍ନୀର ମଝି ବ୍ରିଜ୍‌ରୁ
କେହି, ଯେ-କେହି ମୋତେ ଗ୍ରୁଟିଦିଅ ।

ମୋତେ ଅନୁବାଦ କର—କେହି, ଯେକେହି ;
ମୋ ଭିତରର କଠିନ ଅବାଧ ଶବ୍ଦଗୁଡ଼ିକୁ
ଚିମୁଟା ଦେଇ ଟାଣି ବାହାର କର,
ଦରଜାର ଲକ୍ଷ୍ମେଲ୍‌ସରେ ସନ୍ତ୍‌ସତଆ ପର
ଯେ କଥାଗୁଡ଼ାକୁ ସନ୍ତ୍ ସନ୍ତ୍ କରେ
ସେଗୁଡ଼ାକ ଉପରେ ଲୁଣ ଗ୍ରୁଟିଦିଅ,
ମାରିଦିଅ ।

ରବରରେ ଘଷି ମୋ ଦେହର ଚମଡ଼ାରୁ
ପାରତ ମୋର ନାଁ ।ଟା ପୋଛି ଦିଅ, ·
ମୋତେ ଏମିତ ଅନୁବାଦ କର
ଯେମିତ ମୁଁ ସମୁଦ୍ର ନୁହେଁ, କ ପାହାଡ଼ ନୁହେଁ,
ଗ୍ରୀଷ୍ମ ନୁହେଁ, କ ଶୀତ ବ ନୁହେଁ,
ଯେମିତ ମୁଁ ଆଉ କଛି, ଆଉ କେହି,
ମୋତେ ଚୁପ୍ କରଅ—କେହି, ଯେକେହି ;
ମୋତେ ଅନୁବାଦ କର ।

# "ମଇନା ପଢ଼"—ପିସିମା

"ମଇନା, ପଢ଼୍"—ପିସିମା, ତୁ ଏବେ କେଉଁଠି ?
କେଉଁଠି ତୋର ସେଇ ନଦୀଛବି-ମୁଖ, ଶୀତଳପାଟି-ସ୍ନିଗ୍ଧ ଶରୀର
ତୋର କବୁତର-ଚକ୍ଷୁରେ ଶାନ୍ତି ତ—ମୋର ପ୍ରଥମ ଉପନ୍ୟାସର ପାଣ୍ଡୁଲିପି !
ବିଶେଷଣ ଖୋଜା ମୋର ପ୍ରଥମ ଫାଉଣ୍ଟେନ ପେନ୍ ତୋର ଦିଆ,
ଏବଂ ଫେନିଳୋଚ୍ଛଳ ସମୁଦ୍ରତୀରରୁ ସାଉଁଟା ମୋର ଏଇ ମରହଟିଆ
ତୋର ଦୁଧ-ଅଲତା ପଦତଳେ
ରିମଝିମ ଶ୍ରାବଣରେ ଛଳ-ଛଳ-ନୟନ ମୁଁ
ଏବେ ବି ଶିଶୁ—ବସିଅଛୁ ।

"ମଇନା, ପଢ଼୍"—ପିସିମା, ତୁ ଏବେ କେଉଁଠି ?
କେତେବେଳ ଯାଏ ପିଣ୍ଡାରେ ବସି
ହରିବୋଲ-ବଇଷ୍ଣମଠୁଁ ସତେ ତୁ କେତେ ଗୀତ ନ ଶୁଣିଛୁ !
ନବଗଙ୍ଗା ନଈରେ କେତେ ମାଛ, କେତେ ସ୍ନେହ
ଅନେକ ଦିନୁ ମୁଁ ସେଠି ଗାଧୋଇଛି, ପହଁରିଛି,
ହାଜାରପୁର ମାଳ କୁଠରେ
ଲିଚୁ କୋଳର ଲାଲ ଟକ୍ ଟକ୍ ଖୋପା ଛଡ଼େଇଛି,
କେଉଁଦିନୁ ସତେ ସାଇକେଲ ଚଢ଼ି ମଶାଣି ବାଟେ ଯାଇଛି,
ସିଦ୍ଧେଶ୍ୱରୀ ମଠରେ କୃଷ୍ଣା ଚତୁର୍ଦ୍ଦଶୀର ଘଣ୍ଟା ଶୁଣିଛି !

ତୋର ଅନ୍ନଦାମଙ୍ଗଳ-ପଦାବଳୀ, କାଳିଦାସ ଗ୍ରନ୍ଥାବଳୀ ଭିତରେ
ପୋକ ପଶ ବଦନେ ତୁ ମୋତେ ପଶିବାକୁ ଦେଇଥିଲୁ,
ତୋ "ଗୀତଗୋବିନ୍ଦ"କୁ କପି କରୁ କରୁ ବେଳ ଗଡ଼େ, ତୁ ଆବୃତ୍ତି କରୁ,
ତୋ କଣ୍ଠର ଆଶ୍ଚର୍ଯ୍ୟ ସବୁ ଲୟନଗୁଡ଼ିକ ଏବେ ବି ମୋର କଣ୍ଠେ
ବାଇଚଢ଼େଇ ବସା ପରି ତୋର ସେଇ କୁଲୁଙ୍ଗାରେ
କେତେ ଯେ ଏସ୍ତୁତେଶ୍ୱ ପୋଥିର ଛିନ୍ନାଂଶ
ପ୍ରାଚୀନ ଅଯୋଧ୍ୟା, ଦ୍ୱାରକାର ଗନ୍ଧେ ଭରପୁର :
ପ୍ରକାଣ୍ଡ ହସ୍ତିତ ମହାଭାରତଟା କୋଠରୀ ଭିତରେ
ସତେ ଯେମିତି ଗୋଟାଏ ମନ୍ତ୍ରାରୂଢ଼ !
ଏବଂ ତା ପାଖକୁ ସୁନେଲି ଅକ୍ଷର ଲେଖା—
ଦୁର୍ଗେଶ ନନ୍ଦିନୀ, କପାଳକୁଣ୍ଡଳୀ କୃଷ୍ଣକାନ୍ତର ଉଇଲ !
ଇହକାଳ ଓ ପରକାଳ !

"ମଇନା, ପଢ଼" ପିସିମା ତୁ ଏବେ କେଉଁଠି ?
ମୋର ଏଇ ବଡ଼ ବୟସରେ ଖୁବ୍ ଇଚ୍ଛା ହୁଏ—
ଜାଣନ୍ତି ତୋର ରକ୍ତରେ କେଉଁ ଯୁଗର ସଂଗ୍ରାମ,
ଚକ୍ଷୁ ପଲ୍ଲବ ତଳେ କେବେ କେଉଁଠି ଅଗ୍ନି ଉତ୍ପାତ ହୋଇଥିଲା କି ନା,
ତୋର ଈଶ୍ୱରୀ ପରି ଆର୍ଦ୍ର ମୁଖ, ଶେଫାଳୀ ଗନ୍ଧା ନଟୋଳ ହସ
ତୋର ଦୁର୍ଭେଦ୍ୟ ସୌନ୍ଦର୍ଯ୍ୟ—କି ଜନ୍ମଗତ ?
ନା ତୋର ଅବରୁଦ୍ଧ କ୍ରନ୍ଦନର ଜନ୍ମାନ୍ତର ?
ପଶ୍ଚିମ ପାଖର ସେଇ ମେଳରେ ଶୋଇ
ତୁ ମୋର ଉପନ୍ୟାସର ପାଣ୍ଡୁଲିପି ଦେଖିଛୁ—

ପୃଷ୍ଠା ପରେ ପୃଷ୍ଠା, ପୃଷ୍ଠା ପରେ ପୃଷ୍ଠା—
ସଦ୍ୟ-ଉଦ୍‌ଗତ କଥାଗୁଡ଼ିକୁ ଓଜନ କରି କରି ପଢ଼ିଛୁ,
ଅବିଶ୍ୱାସ୍ୟ ଆକାଶରେ କେତେ ଗୁଡ଼ି ମୁଁ ଉଡ଼େଇଛୁ—
ତୁ ବନ୍ଧୁପରି ସାହସ ଦେଇଛୁ, ସୂତା ଛାଡ଼ିଛୁ, ପ୍ରଶ୍ରୟ ଦେଇଛୁ,
ମୋର ସ୍ୱପ୍ନସମ୍ଭବ ଚପାଲ ଗୁଡ଼ିଟା ବି ଯେମିତି ତୋ'ର ।
ତୋ ଦିଆ ଫାଉଣ୍ଟେନ ପେନ ମସୃଣ ଖାତା, ଏବଂ
ଅସଂଖ୍ୟ ଚିତ୍କାରର ସ୍ୱର ରକ୍ତର ସ୍ରୋତଲିପି—
ସୃଷ୍ଟି ଭିତରେ ।

"ମଇନା, ପଢ଼" ପିସିମା, ତୋର ଦିନାନ୍ତଶ୍ରୀ-ମୁଖ ମୁଁ ଏବେ ବି ଦେଖେଁ ।
ମୋ ସ୍ୱପ୍ନ ଭିତରେ ତୋର ଅସରନ୍ତ ଶରତ, ଅଗଣିତ ସ୍ଥଳପଦ୍ମର ପାଖୁଡ଼ା,
ତୋ ଆଖିର ପାଣିଛପା ଏବେ ବି ମୋ ଆଖିରେ ।

ତୋର ଖଇ-ଧଳା ଶାଢ଼ୀରେ
ଦିନେ ମୋର ଶୈଶବର ପଣିକିଆ ବାନ୍ଧି ରଖିଥିଲୁ
କିନ୍ତୁ ତୁ ଜାଣିଥିଲୁ—ସମସ୍ତ ଦିନେ ମୋର ଦେହ ମନକୁ ଅଧିଗ୍ରସ୍ତ କରିବ
ଟେକାଟିଏ ପରି ଦୂରକୁ ଫିଙ୍ଗିଦେବ ମୋର ମାଛରଙ୍କା ଶୈଶବ,
ଆଣିବ କୋକିଳର ଋତୁ,
କବିତା ଭିତରେ ଯେବେ ମୁଁ ନୂଆକରି ଅଙ୍କୁରିତ ହେବି
ସ୍ୱପ୍ନ ଦେଖିବି. ଏବଂ ମୋର ସ୍ୱପ୍ନସବୁ ଛାତି ଭିତରେ ଅପରାଜିତା ପରି ଫୁଟିବେ
ତୁ ଜାଣିଥିଲୁ—କଳ୍ପନାର ଜଳାକ୍ତ-ପ୍ରାନ୍ତରର ଖରା ପୁହିଁବାର ଏବଂ ଚନ୍ଦ୍ରାମୁହୁଁ
ପ୍ରଥମାର କଳିକାରେ ସଜ ହେବାର ସେଇ ଋତୁ
ମୋର ଛାତିରୁ ଛାତିକୁ ପିଟିହେବ ।

"ମଲ୍ଲିକା, ପଢ଼" ପିସିମା,—ତୋ ପାଇଁ ଶୋକ ସାନ୍ତ୍ୱନା କରୁଛ ମୁଁ ଖୋଜନ୍ତ ।
କଏ କ'ଣ ହଜେଇଛୁ ?  କହ—କଣ ବା କଏ ହରାଏ ?
ଯା ଭିତରେ ଯା କରୁ ଯାଇଛୁ ତା ଖାଲି ଗୁଡ଼ାଏ ଉତ୍ତର ଓ ଦକ୍ଷିଣାୟନ,
କରୁ ଗୀତ ପୁହାଇବାର ରଶ୍ମି, କରୁ କରୁ ଅପରାହ୍ନିକ ଅବସାଦ
ଦଳେ ଦଳେ ବନହଂସୀ,
ଅସ୍ପଷ୍ଟଜନଭ ଦିଗନ୍ତରେ ସୂର୍ଯ୍ୟ ବୁଡ଼ିବାର ଆରକ୍ତ କଳରବ—
ଶବ୍ଦ ନିଃଶବ୍ଦ, ଶବ୍ଦ ନିଃଶବ୍ଦ, ଶବ୍ଦ,
ଏବଂ ତୋର "ପ୍ରୀୟନ୍ତେ-ସର୍ବଦେବତାଃ···"କଣ୍ଠସ୍ୱର ।

"ମଇନା,ପଢ଼"-ପିସିମା ତୁ ଏବେ କେଉଁଠି ?
ତୁ ଜାଣୁ ? ତୋର ଅନାବଶ୍ୟକ ମଇନାଟିକୁ ମୁଁ ମାରଦେଇଛୁ ?
ଅବଶ୍ୟ କେହୁ ଚକ୍ଷୁଟ କର ପାଗନ ଏବଂ ଆକାଶର ରକ୍ତାକ୍ତ ରୌଦ୍ର
ସେଥିରେ ଢଳେ ବ ନଷ୍ଟ ଭ ହେଇନ ।
କ'ଣ କଏ ହଜେଇଛୁ ? କହ—କ'ଣ ବା କଏ ହଜାଏ ?
ଖାଲି କେତୋଟି ଗୀତ ପାହାନ୍ତ ପହର
ଆଉ ସୂର୍ଯ୍ୟ ବୁଡ଼ିବାର 'ଓଟର ବାହୁଙ୍ଗ' ସନ୍ଧ୍ୟା,
ଏବଂ ମୋର ଗ୍ରୁଡଫଟା ଡାକ—
ପିସିମା, ପିସିମା, ପିସିମା ।

# ଯେମିତ ଆଉ କେହ୍ନ

ଯେମିତ ଆଉ କେହ୍ନ, କେମିତ କେକାଣି,
ଆମ ଆଗରୁ ଏଇ ଉପତ୍ୟକାକୁ ଆସିଛୁ ।
ଆଉ ପ୍ରତ୍ୟେକଂର ନାମ ଧରି ଡାକିଛୁ,
ଏ ଜଳକୁ କହୁଛୁ ନଦୀ, ସେ ଜଳକୁ କହୁଛୁ ହ୍ରଦ, ଏବଂ
ଓଇ ଟୁପୁରୁ ଟୁପୁରୁ ଆକାଶ-ଝାଞ୍ଜିର ଜଳକୁ କହୁଛୁ ବୃଷ୍ଟି ;
ନୂଆଁ ରଡ଼ ପରି ତତଲା ସେଇ ଲାଲଫୁଲକୁ କହୁଛୁ କୃଷ୍ଣଚୂଡ଼ା,
ମୟୂରପଙ୍ଖୀ ଆକାଶକୁ ନୂଆ ବିଶେଷଣ ଦେଇ ମୁଁ ଯେ ମିଳେଇବି,
ସେ ବାଟ ଆଉ ରଖିନ,
ଇନ୍ଦ୍ରଧନୁର ସାତୋଟି ଯାକ ରଙ୍ଗ ଉପରେ
ସାତଟି ନାଁର ଏକଦମ ବାର୍ଣ୍ଣିସ ପେଣ୍ଟ ଯେମିତ ମାଖି ଦେଇ ଯାଇଛୁ ।
ଆମର ଏଇ ସସାରଟା ତେଣୁ ଖାଲି ନାଁରେ ନାଁରେ ରୂପବାନ୍,
ରୂପସୀ ଆମର ଏଇ ପୁଷ୍କରିଣୀ, ଏଇ ପୂର୍ଣ୍ଣିମା ଆଉ ସର୍ପଗନ୍ଧା ରାତି ।

କିଏ ଯେମିତ ଅନେକ ଦୂରରୁ ଆସି ଏଠି ଗ୍ରୀଷ୍ମ ଛୁଟି କଟେଇଛୁ ;
ହେଇ—ତାଙ୍କ ବଣଭୋଜିର ଚୂଲିଟା ପଡ଼ିଛି ସେ ଗଛ ଗୁଡ଼ିରେ ।
ଆଉ ଦେବଦାରୁର ବକଳରେ ତାଙ୍କ ତରକାରି ବଘାରର ପୁରୁଣା ବାସ୍ନା ।
ଶୁଖିଲା ପତ୍ରଗୁଡ଼ାକ ବତାସରେ ଆଲୁରୁ ମାଲୁରୁ !
ଯେମିତ କେଉଁ ଏକ ଡାଏରୀର ଛିଡ଼ା ମିଡ଼ା ପୃଷ୍ଠା ।

ହୁଙ୍କା ଉପରେ ପଡ଼ିଛୁ ଦିଗନ୍ତ-ସାକ୍ଷୀ ପ୍ରତିଶ୍ରୁତି
ପାଣି, ପବନ କି ବଜୂଳରେ ଯା'ର ପ୍ରତିଶବ୍ଦ ନାହିଁ ।
ଅନେକ ଅଜଣା ଅଶୁଣା ଶତାବ୍ଦୀ ହଜିଯାଇଛି
ଅଂଦିଆ-ଅନିଆ ହୃଦୟକୁ ଅତିକ୍ରମ କରି ।
ତା'ପରେ ଆମେ ଆସିଛୁ ଏଇ ଛତୁଛୁଆ ବର-ଓସ୍ତ ପଡ଼ିଆକୁ
ଟିଫିନ କେରିଅରରେ ଆମେ ଆଣିଛୁ ସନ୍ତୁଳା ମାଉଁସ,
ଗରମ ମସଲା ପାଇଁ ଡାଲଚିନି, ଲବଙ୍ଗ, ସାଙ୍ଗରେ ସଜନାଛୁଇଁର ଆଗ୍ରର;
ଆଉ ରସୁଆ ରସୁଆ କାଗିଜି !
ଡବା ଭିତରେ ଚମତ୍କାର ଅଳେଇଚଦିଆ ମିଠା ପାନ
ଆଉ ଆମ ସଙ୍ଗରେ ଅଛନ୍ତି କେଇ ଯୋଡ଼ା ଅଭିନ୍ନ ହୃଦୟ
ଯେଉଁମାନେ ପ୍ରତିଶ୍ରୁତି ଆଡ଼କୁ ଧପାଳି ହୁଙ୍କା ଉପରକୁ ଉଠିବାକୁ ଉନ୍ମୁଖ ।

ଯେମିତି ଆଉ କେହି ଏଠିକି ଆଗରୁ ଆସି
ଦ.ହାତରେ ନା ସବୁ ବୁଣିଦେଇଯାଇଛି ।
ଯେତେ ଖୁସି ତେତେ, ଯେତେ ଦୂର ତେତେ
ନାଁରେ ନାଁରେ ଖାଲି ଠଙ୍କା ଏଇ ବନ ସବୁ, ଏଇ ଘାଟ ସବୁ ।
ଗୋଟାଏ ପ୍ରକାଣ୍ଡ ଶବ୍ଦକୋଷ ଭିତରେ—
ଶବ୍ଦ, ପ୍ରତିଶବ୍ଦ, ପ୍ରତିଶବ୍ଦର ପ୍ରତିଶବ୍ଦ
ଆମେ ତା ଭିତରେ ବସିଛୁ , ଏବଂ
ଆଉ କାର, ଆଉ କେଉଁ ଦିନର ମୁଖସ୍ଥ ପ୍ରତିଲିପି ମୁଖସ୍ଥ କରି ଚାଲିଛୁ ।
ସେମାନେ କେହି ନିଜ ନାଁ କହି ନାହାନ୍ତି,
କିନ୍ତୁ ଆଉ ସମସ୍ତଙ୍କର ସବୁକିଛିର ନାଁ ଦେଇ ଯାଇଛନ୍ତି ।

ମୋ ନାଁ ଦେଇଥିଲ ପିସିମା, ଏବଂ ପିସିମାର ନାଁ ଦେଇଥିଲ ତାର ମାଆ ;
କିନ୍ତୁ ଆମର ଏଇ ବଣଶ୍ରେଣୀର ପୃଥିବୀରେ ପ୍ରତ୍ୟେକ ଗଛର,
ଏମିତିକି ଚଢ଼େଇମାନଙ୍କର ଶରୀର ବି ରହିଛି
କେହି-ଜାଣେନା-କିଏ ଦେଇଥିଲ— ନାହିଁକି
ଏଇସବୁ ଅଭିଧାନ ବାଳେଇ ପଢ଼ିବା ଅନର୍ଗଳ ନାଁ
ଏଇ "ନାମୈବ କେବଳଂ" ଯେମିତି ଆମର ନିୟତି ।

. .

ଏଇ ମାନ୍ଧାତା'ଅମଳର ପୃଥିବୀ ଦେହରେ ଅନେକ ରଙ୍ଗର ଛିଟା,
ତଥାପି ଏଠି ରହିଛି ସାପଖେଳା, ମନ-ଓଁଟର ରାସ୍ତା—
କାକଦ୍ୱୀପରୁ ସମୁଦ୍ର, ଫ୍ରେଜାରଗଞ୍ଜ,
ଦି'ପାଖରେ ଉଦ୍‌ବାସ୍ତୁ କାକଳି, ମାଛରଙ୍କାର ଡେଣା
କଷି ଆମ୍ବର ସବୁଜିତ ତୋଟା ଏବଂ
ବି.ଡ଼ି.ଓ. ଜୀପ୍‌ରେ ଗୀତି-କବିତା ପରି ନହ୍ନନହ୍ନୀ-ଟୋକୀ
ଏମାନେ ଶରୀରେ ଅଙ୍କା ଛବି ଗୃହାନ୍ତି, ସ୍ତବ ଗୃହାନ୍ତି,
ନୂତନ. ଅଲିଖିତ-ପୂର୍ବ କବିତା ଗୃହାନ୍ତି
ଗୃହାନ୍ତି ଗୀତ—ଯା'ର ସ୍ୱରଲିପି ପାଇଁ କେହି କେବେ ସାହସ କରିନ,
ଏବଂ କ୍ରମାଗତ ପୁରୁଣା
କଥାର ସିନ୍ଧୁକରୁ ମୋତେ ବାହାରି ଆସିବାକୁ କହନ୍ତି ।
ମୁଁ ଯେତେବାର ଅବାକ କରିଦେବି ଭାବେଁ,
ରକ୍ତିମ ସ୍ପନ୍ଦନକୁ ଅଦ୍ୱିତୀୟ ଶବ୍ଦରେ ଅନୁବାଦ କରିବାକୁ ଯାଏଁ,
ପାରେନା, ପୁରୁଣା ମାନ୍ଧାତା ଅମଳର ନାଁଗୁଡ଼ାକ ବାଟ ଓଗାଳି ବସନ୍ତି
ଯେମିତି କୌଣସି ଆବେଗ ଆଉ ଚଟକା ନୁହେଁ, କୌଣସି ଶବ୍ଦ ଅଶ୍ରୁତ ନୁହେଁ
ଯେମିତି କୁସୁମ ମାଟିରେ ଆଘ୍ରାତ, ଯସାରଟା ଯେମିତି ଦ୍ୱିତୀୟ ମୁଦ୍ରଣରୁ ପୁରୁ

ଅତଏବ ବ୍ୟବହୃତ ଚୂଲ୍ହରେ, ବ୍ୟବହୃତ ଜଳ-ଆକାଶ
ମାଟି ଭିତରେ ଆମର ଏଇ ବଣଭୋଜି ।

ସେମାନେ ଆମକୁ ବାଧ କରିଛନ୍ତି ।
ଏଇ ମଧୁମାସରେ ତୁମେ ଯୁଆଡେ ଦେଖ ଅନାମ ଗଛ ନାହିଁ, ଅନାମ ଫୁଲ ନାହିଁ,
ମାଳୀ, କଣ୍ଠ କେହି ଅନାମ ନୁହନ୍ତି
ଏଇ ଋତୁ ପର୍ଣ୍ଣ ଅରଣ୍ୟରେ ଯାହା କିଛି ସବୁ ଅନ୍ୟ କଥାର କଲମ ;
ଅନ୍ୟ କେଉଁ କୋକିଳର ପ୍ରତିଧ୍ୱନିର ପ୍ରତିଧ୍ୱନିର ପ୍ରତିଧ୍ୱନି ଆମର ପଞ୍ଚମସ୍ୱର
ଅନ୍ୟ କେଉଁ ପ୍ରେମିକାର ପ୍ରତିଲିପିର ପ୍ରତିଲିପି ଆମର ପ୍ରୀତି ମନ୍ତ୍ର ।
ଆମେ ଯେତେବେଳେ ଅନନ୍ୟ ସେତେବେଳେ ଆଉ କେହି !

କେହି ସେମିତି ଆମକୁ ବାଧ କରିଛି ।
ଆମ ପୋଖରୀରେ ଏତେ ନୂଆ ମାଛର ପହଣା,
ଗଛରେ ଏତେ ନୂଆ ହୋଇ ଫଳିଥିବା ଜାମରୋଳ
କିନ୍ତୁ ସେମାନଙ୍କର ଛତୁ ପରି ଗଜେଇଥିବା ନାଁ ଗୁଡ଼ାକ ଲାଗିଛି କାଠ
ହୋଇ ମାଛ ଦେହରେ, ଚୋପା ହୋଇ ଫଳ ଦେହରେ
ଯେମିତି ଆଉ କେହି, କେମିତି କେଜାଣି,
ଆମ ଆଗରୁ ଏଇ ଉପତ୍ୟକାକୁ ଆସିଛି ।

# ମୁଁ ବି ଯନ୍ତ୍ରଣାକୁ

ଯନ୍ତ୍ରଣା ମୋତେ ଯେତେବେଳେ ମୋଡ଼ି କାବୁ କରେ
ମୁଁ ବିକ୍ଷତ ପରାହତ ମାଟାଡର ।
ଉଦ୍ଧତ ଶିଙ୍ଗ ତଳେ ହତମାନ ।

ଯେତେବେଳେ ପିପାସୁ ବାହୁ ମଧ୍ୟରେ ଏକମାତ୍ର ପଶ୍ନ—
ପିପାସା.
ଏବଂ ଚୁମ୍ବନ ମୋର ଓଷ୍ଠ ପ୍ରତି ବିମୁଖ ।
ଗଳା ଭିତରେ ଠେଲି ଉଠୁଥିବା କୋହକୁ ରୋକି ପାରେନା
ନିଜକୁ କେମିତି ବିସଦୃଶ ଲାଗେ ;
ଯେତେବେଳେ ଆଲିଙ୍ଗନର ଚୂଡ଼ାଗୁଡ଼ିକ ଭଙ୍ଗା ଦେଖିଲ
ଯେତେବେଳେ ଯନ୍ତ୍ରଣା ମୋତେ କାବୁ କରେ
ଏବଂ ମୁଁ ବିକ୍ଷତ ପରାହତ ।

ଯେତେବେଳେ ଯନ୍ତ୍ରଣା ମୋତେ ମୋଡ଼ି କାବୁ କରେ
ଗ୍ରନ୍ଥ ଭିତରେ ସମୁଦ୍ରତୀର-ସ୍ୱାକ୍ଷରିତ ଫଟୋ
କେବଳ ଧସ୍ତିବାକୁ ଲାଗେ

ଯେତେବେଳେ ଦିଗନ୍ତ ବିସ୍ତୃତ ରେଲ୍ ଲାଇନ
ଯେମିତି ସମାନ୍ତରାଳ ବିନ୍ଦୁପ
ଏବଂ ଉଜ୍ଜ୍ୱଳ ଜଂଶନ ପ୍ରାନ୍ତର ସେପାରେ ।
କେଶଶ୍ରୀ-ସନ୍ଧ୍ୟା ତଳେ ଭଉଁରିଖେଳା ଆକାଶ-ସିନ୍ଥ
ଛୁଡ ପାରି ହୋଇ ଆହୁରି କେତେ ଦୂର କିଏ ଜାଣେ ?
ମାତ୍ର ଚାରିଟି ଅକ୍ଷର ଭିତରେ ମୋର୍ ସବୁ ସ୍ୱପ୍ନ ଯେତେବେଳେ ବନ୍ଦୀ,
ଯେତେବେଳେ ଯନ୍ତ୍ରଣା ମୋତେ ମୋଡ଼ି କାବୁ କରେ
ଏବଂ ମୁଁ ବିକ୍ଷତ ପରାହତ ।

କିନ୍ତୁ ଯନ୍ତ୍ରଣାକୁ ମୁଁ ଯେତେବେଳେ ମୋଡ଼ି କାବୁ କରେ
ଯେତେବେଳେ ପାଖ ଚୂଲ୍‌ରେ ଦି ହାତ ସେକେଁ
ଏବଂ ଷ୍ଟୁଲ୍‌ଙ୍ଗରେ ଫୁଲ୍ ଫୁଟାଏ
ମନୋହର ଦୂରତ୍ୱରେ ଯେତେବେଳେ ମୁଁ ବଡ଼ ହୋଇଉଠେଁ,
ମୋର୍ ଯନ୍ତ୍ରଣାର କଳାଚଢ଼ ଉପରେ
ଅନାରକଲି ଛୁଆଁ ଟୁଂ ଟାଂ ବାଜେ ।
ବଞ୍ଚନାକୁ ବେଶ ଭଲ ଲାଗେ
ଯେମିତି କପୋଳ-କଳ୍ପନାର ସନ୍ଦେଶ
ଯେତେବେଳେ ଅଦୃଷ୍ଟ ଆଖିର ଭରପୂର ବିରହ
ଯନ୍ତ୍ରଣା ସଙ୍ଗେ ଯନ୍ତ୍ରଣାର ସଙ୍ଗମ ଘଟାଏ ।

ଯନ୍ତ୍ରଣା ମୋତେ ମୋଡ଼ି କାବୁ କରେ
ମୁଁ ବି ଯନ୍ତ୍ରଣାକୁ ମୋଡ଼ି କାବୁ କରେ ।

# ତୁମେ ଗୋଟାଏ ମିଛୁଆ

ମୁଁ ଚାଲିବାକୁ ଚାହିଁ ନ ଥିଲି,
କିନ୍ତୁ ତୁମେ ଗୁଡ଼ାଇଲନି, ତୁମ ସଙ୍ଗେ ଏକଲା ଅନେକଟା ବାଟ ଚଳେଇଲ ।
ଏବଂ ଚାଲିବା ସଙ୍ଗେ ଜୋଡ଼ିଦେଲ ନାଲିମାଟିର ପଥ,
ଛାଇଦେଲ ଆକାଶରେ ଏକ-ଆକାଶ ତାରା, କୁଡ଼ାରେ ରକ୍ତକରବୀ,
ଏକ ଅନର୍ଗଳ ଭାବନାହୀନ କଥା ।
ଯେମିତ ଚାଲିବା ପାଇଁ ନୁହେଁ
ଏସବୁ ପାଇଁ ।

ତୁମେ ଗୋଟାଏ ମିଛୁଆ, ଗୋଟାଏ ମିଛୁଆ ।
ମୁଁ କ୍ଲାନ୍ତ ନ ଥିଲି, ମୁଁ ଶୋଇବାକୁ ଚାହିଁ ନ ଥିଲି
ଗୁଡ଼ାଇଲ ନାହିଁ, ଶୁଆଇଲ,
ଏବଂ ଶଯ୍ୟା ସହିତ ଦେଲ ନୀଳ ବଲ୍‌ବ,
ବଛେଇଲ ମଲ୍ଲୀ, ସୁଇଟ୍-ପପି ଏବଂ କେଉଁଠୁ କେଜାଣି
ଇଭନିଂ-ଅଫ୍-ପ୍ୟାରିସ ଓ ନରମ ଯୂଇ ।
ଯେମିତ ଶୋଇବା ପାଇଁ ନୁହେଁ
ଏସବୁ ପାଇଁ ।
ତୁମେ ଗୋଟାଏ ଭଣ୍ଡ, ଗୋଟାଏ ଭଣ୍ଡ ।

ମୁଁ ଦେବାକୁ ଚାହିଁ ନ ଥିଲି

କିଛି ଶୁଣିଲନି, ପ୍ରାପ୍ୟ କାଢ଼ିନେଲ ।

ନେଲ ଆଲବମରୁ ଫଟୋ, ବେଗରୁ ରୁମାଲ, ଚାଢରୁ ଚିଠି,

ଏବଂ ନେଲ ମୋର ଆପାଦ ମସ୍ତକ ପ୍ରାପ୍ୟ ଲୁଣ୍ଠ କରି ।

ପରିବର୍ତ୍ତେ ଉପହାର ଦେଲ ରଙ୍ଗୀନ ଏକ ରୂପକଥା—ପ୍ରୀତି

ଏବଂ ସ୍ୱାଦହୀନ, ବର୍ଣ୍ଣହୀନ ଏକ ଛଳନା—ହୃଦୟ ।

ଯେମିତି ନେବା ପାଇଁ ନୁହେଁ,

ଏସବୁ ପାଇଁ ।

ତୁମେ ଗୋଟାଏ ମିଛୁଆ, ତୁମେ ଗୋଟାଏ ଭଣ୍ଡ ।

# ଏଇ ଦସ୍ତ୍ୟ ଶଠିଗୁଡ଼ା

ଏଇ ଦସ୍ୟୁ ଶଠି ଗୁଡ଼ାକ ହାତରୁ ମୋର ମୁକ୍ତି ନାହିଁ ।
ସପ୍ତାହ ପରେ ସପ୍ତାହ ରୁଦ୍ଧ ଶ୍ୱାସ, ମୋ ଗୁଣ୍ଠ ଭିତରେ ହୃତ୍‌ପିଣ୍ଡ ତୃପ,
ସମୁଦ୍ର ଧୂଆଁ ନୀଳ ଖାମ୍ ଲେଟର ବକ୍ସକୁ ଅସନ୍ତି
ମୋ ଠାରୁ ଯେମିତି କିଛି ଗୃହାନ୍ତି କି, ପ୍ରାର୍ଥନା କରନ୍ତି କି
ଭୟ ଦେଖାନ୍ତି ଜାଣେନା ।
ମୁଁ ଗୋଟାଏ ଖୁମାଣୀ ଟୋକା, ଭାବେଁ ଖୋଲିବନି, ଶୁଣିବନି,
କଥା କହିବନି ;
ଭାବେଁ ପଡ଼ିଥାଉ ମୂକ ମେଲାରେ ଟିକି ଟିକି କରି ଉଡ଼େଇ ଦେଇ ଆସିବି ;
ଇଚ୍ଛା ହୁଏ, ଲେଖେ—ଏଇସବୁ ଉଚ୍ଛ୍ୱସିତ ବିଶେଷଣ ମୁଁ ବିଶ୍ୱାସ କରେନା ।

ସପ୍ତାହ ପରେ ସପ୍ତାହ କିଏ ଯେମିତି ନୀଳ ଆକାଶ ଛୁଇଁ ନୋଟିସ ଜାରି କରେ
ସିଲ ମୋହର ଦିଆ ସମନ ମୋ ଦରଜାରେ ଝୁଲିଏ,
ବସନ୍ତ ଋତୁର ଭଲ୍ୟୁଣ୍ଟିୟାରମାନେ ଜିଦ ଧରନ୍ତି,
ମୋର ମନକୁ ଦୁର୍ବଳ କରିବାକୁ ଚାହାନ୍ତି ।
ନେଷି ଡାଲରେ ମଞ୍ଜରୀ, ବେଢ଼ାରେ ବୋଗେନଭିଲିଆ,
ବାଣ୍ଡିପରେ ମହୁମାଛି
ଯେମିତି ଅଗଣିତ ପତାକା ଓ ନିରବଧି ସ୍ଲୋଗାନ,

ମୋ ମନକୁ ଦଖଲ କରିବା ପାଇଁ ସେମାନେ କ୍ରମାଗତ ଆଗଉଛନ୍ତି ।
ମୁଁ ଗୋଟାଏ ଖୁମାଣୀ ଟୋକୀ, ଯାବେଁ ଦେଖିବନ, ଶୁଣିବନ,
ହଁ ନା କାହିଁରେ ମୁଁ ନାହିଁ ।
ସବୁଯାକ ଦସ୍ୟୁତା ଗୋଟାଏ ଗ୍ରନ୍ଥରେ ଗଢ଼ା
ଚିତ୍କାର କରି କହିବାକୁ ଇଚ୍ଛା ହୁଏ, —
ଏସବୁ ମୁଖୋଶ ପିନ୍ଧା ଶବ୍ଦକୁ ମୁଁ ଭୟ କରେ,
'ବସନ୍ତ' 'ଭଲ ପାଇବା' 'ହୃଦୟ' 'ଯଦିଦଂ ହୃଦୟଂ ମମ,
ଏସବୁରେ ମୋର ଆଦୌ ବିଶ୍ୱାସ ନାହିଁ !
ସବୁ ସବୁ ସପ୍ତାହ କଟେ ପୁଣି ଲେଟର ବକ୍ସ ଖୋଲେ
ପୁନଶ୍ଚ ସେଇ ଅବିଶ୍ୱାସୀ ଭୟାନକ ବ୍ୟାପାରଗୁଡ଼ିକ ଘଟେ ।
ସମୁଦ୍ରର ଢେଉରେ ବିପର୍ଯ୍ୟସ୍ତ କଥାଗୁଡ଼ିକ ମୋ ଗ୍ରନ୍ଥରେ ମଥା ରଖନ୍ତି
ମୋ ଠାରୁ ଯେମିତି କିଛି ବିହାନ୍ତ କ ପ୍ରାର୍ଥନା କରନ୍ତି କି
ଭୟ ଦେଖାନ୍ତି ଜାଣେନା ।
ସପ୍ତାହ ପରେ ସପ୍ତାହ ମାସ ପରେ ମାସ ପ୍ରସ୍ତାବ ପରେ ପ୍ରସ୍ତାବ ।
ସ୍ୱପ୍ନିର କବୋଷ୍ଣ ଅନ୍ଧକାରରେ ଆକଣ୍ଠ ବୁଡ଼ି ରହି
ମନେ ମନେ ଖସଡ଼ା କରେ ।
ଗ୍ରନ୍ଥର କାର୍ଣ୍ଣିସରେ ମହୁମାଛି, ବେଢ଼ାରେ ବୋଗେନ ଭିଲିଆ—
ଦସ୍ୟୁ ଚିଠିଗୁଡ଼ିକ ହାତରୁ ମୋର ସମ୍ଭବତଃ ନିସ୍ତାର ନାହିଁ ।

# ଏ ସବୁ କୁହା ଯାଇଥାନ୍ତା

ଏସବୁ କୁହା ଯାଇଥାନ୍ତା
ଫାଟକର ବସନ୍ତ ଲତାକୁ
କମ୍ପା ହ୍ରସ୍ୱ ଫୁଲଦାନର ବାହ୍ୟାଗ୍ର ପଦ୍ମକୁ
ଲକ୍ଷ୍ୟ କର—
ଯେମିତ ଖୁବ୍ ଅନାୟାସେ,
ଯେମିତ କେଉଁ ଉଚ୍ଚାରିତ ସ୍ୱଗତୋକ୍ତି ପରି
ନଜର ଖୁସିକୁ ହାତରେ ଏପାଖ ସେପାଖ
ଗୁଟି ନେଇ ନେଇ ।

ଏସବୁ କୁହା ଯାଇଥାନ୍ତା
ଘଣ୍ଟା କଣ୍ଟା ଆଡ଼କୁ ଥରଟିଏ ବି ନ ଗୃହିଁ
ଅପରାହ୍ଣିକ ଆକାଶର ବାର୍ଣ୍ଣିସ ରଙ୍ଗେ ଗାଧୁଆ
କଫିର ପିଆଲାରୁ ବାଷ୍ପ ଉଡ଼ିଗଲେ
ଆଖିରେ ଆଖି ରଖିବା ନ ରଖି
କ୍ଳାନ୍ତର ବ୍ୟଞ୍ଜନା ସବୁ
ମୁହଁରୁ ପୋଛୁ ପୋଛୁ—
ଏସବୁ ।

ଏସବୁ କୁହାଯାଇଥାନ୍ତା
ଯେମିତି ଏ ସଂସାରେ
କୁହା ଅକୁହାର ଭେଦ ସାମାନ୍ୟ,
ଯେମିତି ସବୁ କିଛି ସ୍ୱତଃସ୍ଫୂର୍ତ୍ତି
ଅଛି, ଯେମିତି ବା
ଶ୍ରୋତା ଖାଲି ଉପଲକ୍ଷ୍ୟ, ବକ୍ତା ତତୋଽଧିକ
ଯେମିତି ପ୍ରେମ ପୁନରୁକ୍ତି,
ବସନ୍ତ ନୂଆ ହେଇ ଛପା ଆଲମାର କାହାଣୀ ପେଡ଼ି ;
ଦାୟଟା ଯେମିତି ଫୁଲଦାନର, ଫାଟକର ବସନ୍ତ ଲତାର, କମ୍ବା
ନଛକ ହାଓ୍ୱାର—
ଏମିତି ଅନାୟାସେ ।



ଏସବୁ କୁହାଯାଇଥାନ୍ତା
ତବ୍ଲ ସିଟାରରେ ନମ୍ର, ପେଟ୍ରୋଲର ସୌରଭରେ ଶଙ୍କର,
ମୁଦ୍ରିତ ସଂଲାପରୁ ଉଦ୍ଧୃତ ପରି ନୈର୍ବ୍ୟକ୍ତିକ ;
ଯେମିତି ସହଜେ ଗ୍ରେଜ ଝର୍କା ଖୋଲି ଘରକୁ ଖବର ଆଣେ
ଠିକଣା ଲେଖା ପରେ ଖାମ ବନ୍ଦ କରେଁ
ଜଳର ଗୃଦରରେ ହାଓ୍ୱା ଖେଳିଗଲେ
ଝୁମ୍ପି ହୁଏଁ, ସେମିତି ସହଜେ
ଏସବୁ, ଏସବୁ, ଏସବୁ ।

# ତୁମେ ଶୁଣିବାକୁ ଚାହଁନା

ତୁମେ ଶୁଣିବାକୁ ଚାହଁନା—
କେଉଁଠି ଯେମିତି ଏକ ଅନ୍ଧ ବତାସ କାନ୍ଦ ବୁଲେ
କେବେ କେଉଁ ଉଷାକାଳେ ପଦ୍ମକଢ଼ିର ନଦ ଭାଙ୍ଗିଥିଲା
ସେଇ ପଦ୍ମର ତୃଷ୍ଣାରେ ସେ ଅସ୍ଥିର ।

ତୁମେ ଶୁଣିବାକୁ ଚାହଁନା—
ବେହେଲାର ଦେହ ଛୁଇଁ ଏତେ କାହିଁ କରୁଣ କ୍ରନ୍ଦନ
ଝଡ଼ର ରାତିରେ କାହିଁ ଏକା ଦେବଦାରୁ ଶାଖା,
ଭୂଇଁ ପ୍ରତି ନଇଁ ନଇଁ ଆସେ
ସମୁଦ୍ର ପିଟଇ ମଥା କାହିଁ ଏଇ ଶୁଖିଲା ବାଲିରେ ।

ତୁମେ ବୁଝିବାକୁ ଚାହଁନା
ଏତେ ଏତେ ଯାଇ ଫୁଲ ପୃଥିବୀର ଲୋଡ଼ା କି ହୁଅଇ,
ଫାଲ୍‌ଗୁନ ଆଣିକି ଦେଇ କି ହେବ ଆମର,
କିବା ହେବ ଗୀତ ଗାଇ, ଏ ମୃତକୁ ସମ୍ବର୍ଦ୍ଧନା କରି ?

ତୁମେ କହିବାକୁ ଚାହଁ ନା।
ଉତ୍ତର ଆକାଶେ କିଆଁ ତାରା ଏତେ,
ଲିଭି ବି ଲିଭେନା କିଆଁ ଚନ୍ଦନର ପ୍ରକମ୍ପିତ ଶିଖା,
ପୃଥିବୀର ସବୁ ବେଢ଼େଲରୁ ସବୁ ତାରି ଛଡ଼ାଯାଇ ପାରେନା'ବ କିଆଁ ।

ତୁମେ ମାନିବାକୁ ଚାହଁ ନା
ତୁମେ ବୁଝିବାକୁ ଚାହଁ ନା-
ତୁମେ ଶୁଣିବାକୁ ଚାହଁ ନା ।

# ବାଙ୍ମୟ

ବୃକ୍ଷ ତୁମେ କେଉଁଠୁ ? ତୁମର କି ଭାଷା ?
ରୌଦ୍ର ଦଗ୍ଧ ସ୍ୱର ତୁମର ସ୍ୱର ବର୍ଣ୍ଣ ।
ମୂଳରୁ ଉତ୍ଥିତ ତୁମର ଫଳ
ପ୍ରାଚୀନତମ ସଙ୍ଗୀତ ।

ତୁମେ ସ୍ଥାଣୁସ୍ଥିର, ତୁମେ ବିଦ୍ୟମାନ ।
ନଦୀ, ତୁମେ କେଉଁଠୁ ? ତୁମର କି ଭାଷା ?
ମଇଳା ଧୂଆ ତୁମର ତୃଷ୍ଣା, ମହାଦେବଙ୍କ ଜଟାରୁ ।
ତୁମେ ସ୍ରୋତ ଭିତରେ ସ୍ରୋତସ୍ୱିନୀ
କଳକଣ୍ଠ ;
ତୁମେ ପ୍ରାଣବନ୍ତା, ତୁମେ ବହମାନା ।

ବୃକ୍ଷ, ଆମେ ଫଳ ପ୍ରତ୍ୟାଶୀ
ନଦୀ, ଆମେ ମଳ—ପ୍ରତ୍ୟାଶୀ
ଆମେ କେଉଁଠୁ ? ଆମର କି ଭାଷା ?

# ଉତ୍କଳ ଜଂଶନ

ବାରମ୍ବାର ଟ୍ରେନ ଆସି ଠିଆହୁଏ ଉତ୍କଳ ଜଂଶନେ
କେଜାଣି କଏ ଓହ୍ଲାଏ ?
ଦ୍ୱିପ୍ରହର ନଦାରୁଣ ଜୁନ
ଅପ୍ ନା ଡାଉନ ?
ମୋ ହୃଦୟ ପୃଷ୍ଠରୁ
କାଲେଣ୍ଡର ଛିଣ୍ଡୁଆ ଛିଣ୍ଡୁଆ

# ଶେଷ ବନ ଭୋଜି

ତୁମେ ମୋତେ ନାମ ଧରି ଡାକିଲ, ଯେମିତି ପ୍ରଥମ,
ଏବଂ ସେତିକବେଳେ ମୋ ହାତର
ପାଞ୍ଚଟା ଆଙ୍ଗୁଳି ଝିମ ଝିମ ହୋଇ ଉଠିଲା,
ତୁମକୁ ଗୁଳି କରିଲି ।

ତୁମେ ଏବେ ପରଛଡ଼ା ମୁରଗୀ, ନିଃସ୍ୱର
ବାଲି ଭିତରେ ତୁମର ସଙ୍କୁଚିତ ମୁହଁ
ଏବଂ ମୁଁ, ବାଷ୍ପଘନ ଚକ୍ଷୁ ମୁଖାମୁଖି
ତୁମର ଅସ୍ଥିର ଆଙ୍ଗୁଳିରେ ସଦ୍ୟ ବାରୁଦର ଧୂଆଁ
ତୁମର ତ୍ରୁଟୀ
ଏବଂ ମୋ ମନରେ ଆପାଦ ମସ୍ତକ ଭସ୍ମ ।

ତାହାହେଲେ
ଏଇ ଆମର ଶେଷ ବନଭୋଜି ।
ବାରୁଦର ସମୁଦ୍ରରେ ତୁମର ଭେଳା ଭସେଇ ଦେଲି ।
ତୁମେ ଜାଣ ଏଇ ଭଲପାଇବା ଦିନେ ତୁମକୁ ନେଇଯିବ ଶ୍ମଶାନକୁ,
ଏବଂ ମୋତେ ବି ।

କିନ୍ତୁ ପିକ୍‌ନିକ୍‌ର ଅପରାହ୍ଣରେ ତୁମେ ଏକଦମ ଅବୁଝା
ତୁମ ରକ୍ତରେ ବସନ୍ତକାଳ ଏବଂ
ହାତ ଘଡ଼ିରେ ଶ୍ରେଷ୍ଠ କଣ୍ଟା ଉପରେ ବଡ଼ କଣ୍ଟା ;
ତୁମର ଅବୁଝା ପେଶୀ ଭିତରେ ମୁଁ ଠେକୁଆଁଠୁଁ ବି ନରମ ;
ତୁମେ ମୋତେ ଖୁନ କରିବାକୁ ବାଧ୍ୟ କଲ ।
ତୁମେ ଏବେ ସ୍ଥିର, ମୁଁ ଅସ୍ଥିର ।
ମୋ ପାଇଁ ଭାବନା,
ମୋତେ ଶେଷଥର ପାଇଁ ଭାବିବାକୁ ଦିଅ ।

ବିଶ୍ୱାସ କର ମୋର ଅବସ୍ଥା ଭଲ ନୁହେଁ ।
ମୁଣ୍ଡ ଉପରେ କୌଣସି ଛପର ଆଉ ନିରାପଦ ନୁହେଁ
ଏବେ ମୋର ସମସ୍ତ ମନ୍ତବ୍ୟ ପଛରେ ।
ତୁମେ ଶାନ୍ତ, ସ୍ୱଏତ ସୁଖୀ ;
ଏବଂ ମୋ ମନରେ ଆପାଦ ମସ୍ତକ ଭୟ ।
ଆଙ୍ଗୁଳି ଭିତର ଫାଙ୍କ ଦେଇ ସବୁ ପଳେଇ ପାରିଥାନ୍ତି
କ'ଣ ହୋଇଥାନ୍ତା ?
ତା ହେଲେ ବି ପୁନଶ୍ଚ ତୁମେ, ପୁନଶ୍ଚ ମୁଁ ।
କାଲି, ପରଦିନ ଦିନ, ବା କୌଣସି ପିକ୍‌ନିକ୍‌ର ବେଳ ଓଳି ।
ଯେତେବେଳେ ତୁମ ହାତରେ ପ୍ରଥମହଂସୁ ଫିକ୍‌ସଡ୍ ରେଟ
ଏବଂ ମୁଁ ପାପୀସ୍ୱପ୍ନୀ, ମୁଖୋସ ଭିତରେ ମୋ ମନ,
ଏବଂ ମନ ଭିତରେ ଛଦ୍ମବେଶ
ତୁମେ ନପାଇ ନପାଇ ଦଉଡ଼ି ଦଉଡ଼ି

ଅବଶେଷେ ଗୁଳି କରିଥାନ୍ତି ନିଶ୍ଚୟ
ମୁଁ ତୁମକୁ ସେ ସୁଯୋଗରୁ ବଞ୍ଚାଇ ଦେଲି ।
ତୁମେ ଏବେ ନାହିଁ, ଜାଣେନା ହୁଏତ ଅଛ,
କିନ୍ତୁ ମୋ ମନରେ ଆପାଦମସ୍ତକ ଅଶରୀରୀ ଭୟ—
ପରେ ଭଲ ପାଇବା ନିକଟରେ ଘୃଣା ହାରି ମାନିଥାନ୍ତା
ପରେ ତୁମକୁ ନାମ ଧରି ଡାକିଥାନ୍ତି ।

# ସଂଧ୍ୟାର ଜଳହ୍ରଦରେ

ପଳେଇଲ କାହିଁକି ?
ଲଜ୍ଜା ? କ୍ଷୋଭ ? ଆତ୍ମଗ୍ଲାନି ?
କୌଣସି ପ୍ରୟୋଜନ ନ ଥିଲା ।
ନିଜକୁ ମିଛଟାରେ ଅପରାଧୀ ଭାବିଲ ।
କେହି ମୋତେ ଠକେଇ ପାରିନି ।
ମୁଁ ନିଜେଇ ଠକିଛି,
ଆଖିରୁ କାନ୍ଦଣାର ଏବଂ
ମନରୁ ଭଲ ପାଇବାର
ସମସ୍ତ ଦାଗ ପୋଛି ଦେଇଛି,
ଏବେ ତୁମେ ନିରାପଦରେ ଫେରି ଆସି ପାର,
ଆସିଲେ କୌଣସି ଆଶ୍ଚର୍ଯ୍ୟ ଦେଖିବାକୁ ପାଇବନି
ଦେଖିବ ଦରଜାରେ ମୁଁ ନିରୁଚ୍ଛ୍ୱାସ ଠିଆ ହୋଇଛି ।

ସିଢ଼ିର ପଦାବଳୀ-କମ୍ପା ଛଟି ବାକ୍ସରେ ଅଭିସାର,
କେଉଁଠି ମୋର କିଛି ସୁଖ ନାହିଁ ।
ରେଡିଓର ଗୀତ, ଘଡ଼ିର ଝରକା, ସବୁ ଢକ୍କ

ଏବେ ଏକୁଟିଆ ଦ୍ୱିପହର ବାଘ ସାହାରାଁ
ତୁମେ ସ୍ୱଚ୍ଛନ୍ଦରେ ମୋତେ ଅପମାନ କରିଯାଇ ପାର

ପ୍ରୀତି ବା ତା'ର ଅଭିନୟ କିଛି ଲୋଡ଼ା ନାହିଁ
କିଛି କଠିନ ଦାବୀ ବି ଆଉ ରଖିନି ।
ନିଜକୁ ମୂଳରୁ ଏକଦମ ଓପାଡ଼ି ଦେଇଛି,
ମୋର ଶିରା ଉପଶିରା ଏବେ ସାଦା
ଯେମିତି ଏକ ରୂପକଥା ସ୍ୱପ୍ନ ମହାଦେଶରେ ମୁଁ ରାଣୀ
ନିବର୍ଣ୍ଣ ନିସ୍ୱାଦ ।

ଆଖିର ସ୍ୱପ୍ନଗୁଡ଼ିକୁ ତଳେ ଓହ୍ଲାଇ ଦେବା ପରେ
ତୁମର ଅସଲ ମୁହଁ ମୁଁ ଦେଖି ପାରୁଛି ।
କୌଣସିମତେ ବିଶ୍ୱାସ କରି ପାରୁନି
କଲିଂବେଲର ଶବ୍ଦ ପାଖରେ ମୁଁ ଏ ପର୍ଯ୍ୟନ୍ତ ଋଣୀ ଥିଲି
ଏତେଦିନ ମିଥ୍ୟାବାଦୀ ଅକ୍ଷରଗୁଡ଼ିକୁ ଜପ କରିଛି ମନ୍ତ୍ର ପରି,
କୂଅରେ ମୁଁ ସମୁଦ୍ର ଦେଖିଛି ଯୁଗ ପରେ ଯୁଗ ମୁଗ୍ଧ ହୋଇ ।

ଭଣ୍ଡ ଋତୁମାନଙ୍କୁ ଶାସ୍ତି ଦେବା ପାଇଁ
ମୁହଁ ଫେରେଇ ବସିଥିଲି ସାରାଦିନ
ଏବେ ସନ୍ଧ୍ୟା ବେଳେ ପୁଣି ଜାନକୀ ଇଚ୍ଛା ନେଇ
ଆସିଛି ପାତାଳର ଉପକୂଳେ,
ହ୍ରଦ ଜଳରେ ଧଳା ସେଲିଂ ବୋଟ ଖୋଜୁଛି

ପ୍ରାଚୀନ ଇତିହାସ ତପୁଡ଼ା ଶବମାନେ
ଆକାଶରେ ବିଛେଇ ଦେଇଛନ୍ତି ଗ୍ରେଟ ଛୋଟ ଚେଷ୍ଟ,
ଇଚ୍ଛାହୁଏ, ନିଜକୁ ବ୍ଲଟିଂ ପେପରର ଟୁକୁରା ପରି
ଭସେଇ ଦେବି ।
ପଲେଇଲି କାହିଁକି ?
କୌଣସି ପ୍ରୟୋଜନ ନ ଥିଲା ।

# ଶୂନ୍ୟ ପୂରଣ

ଗୋଟାଏ ଶୂନ୍ୟକୁ ନେଇ ବଡ଼ ବିପଦରେ ପଡ଼ିଛୁ—
ସାମାନ୍ୟ ଗୋଟାଏ ଶୂନ ପୂରେଇ ପାରୁନୁ ।
ଶାନାଇ ବାଲିକୁ ନେଇ ନହବତ ବଜେଇଲି
ଉଚ୍ଛୁଳ ଛଠା ରାଗିଣୀ ଶୂନର ପରିଧି ଟିକିଏ ଛୁଇଁଗଲା
କିନ୍ତୁ ଶୂନକୁ ହଟେଇ ପାରିଲା ନାହିଁ ।
କଣ କରିବା ଏବେ ?   ଆଚ୍ଛା, ଟିକିଏ ରୁହ ।
ବାଁଟିନା ଗୋଟିକ ପରେ ଗୋଟିଏ ସଂଖ୍ୟା, ଲେଖିଗଲେ କେମିତି ହୁଅନ୍ତା
ଦଶକ, ଶତକ, ସହସ୍ର, ଅୟୁତ ଲକ୍ଷ, ନିୟୁତ, କୋଟି
କି ବିରାଟ ଏକ ସଂଖ୍ୟା, ଯେମିତି ଏକ ଦର୍ପିତ ସାମ୍ରାଜ୍ୟର ବଜେଟ୍ !
ମନେ ହୁଏ ଏଥର ଶୂନ୍ୟକୁ ଖୁବ୍ ଜବଦ କରାଯାଇଛି
ଗୋଟାଏ ବଡ଼ ବେଢ଼ି ଯେମିତି ତା ଗୋଡ଼ରେ ଦେଇଛି ।

୨

ସେଇ ସଂଖ୍ୟାର ସମୁଦ୍ରରୁ କ୍ରମେ ବାହାରି ଆସିଲା
ଆକାଶଛୁଆଁ ଘର, ସମୁଦ୍ରକର୍ଷୀ ଜାହାଜ,
ରାଜ୍ଯ, ଦୁର୍ଗ, ମନ୍ଦର ରଙ୍ଗମଞ୍ଚ ;
କିନ୍ତୁ କି ସର୍ବନାଶ ! ପ୍ରତ୍ୟେକ ଭିତରେ ଅସଂଖ୍ୟ ଫାଙ୍କ
ଆହୁରି ଅସଂଖ୍ୟ ଶୂନ

ଯେମିତି ଛଳନା ଭିତରେ ଛଳନା

ନାଃ

ଏଥର କଲମରେ ଏକା ଆଞ୍ଚୁଡ଼ାକେ
ବାଁ ପଟ ସଂଖ୍ୟାଗୁଡ଼ାକ କାଟିଦେଇ
ପୁନଶ୍ଚ ସେଇ ଆଦିମ ଶୂନଟାର ମୁହାଁମୁହିଁ ହେଲି ।
ମନରେ ଗୋଟିଏ ପାଞ୍ଚ ପାଞ୍ଚିଲ
ଏଥର ଶୂନର ଡାହାଣରେ ଗୋଟିକ ପରେ ଗୋଟିଏ ସଂଖ୍ୟା
ଲେଖିଲେ ତ ମନ୍ଦ ହେବନି ?
ଦଶମିକ, ଶତମିକ, ସହସ୍ରମିକ
ସଂଖ୍ୟାଟା ଗ୍ରେଟ ହେଉ ହେଉ ଏକଦମ ଅଣୁବୀକ୍ଷଣର ରେଞ୍ଜ
ପାର ହୋଇ ଯାଇଛି ।

ବାଃ ବେଶ ତ ?
ଏଥର ଶୂନକୁ ଖୁବ ସରୁ ବୋତଲରେ ଭରି ଜାବ କରାଯାଇଛି ;
ଭାବୁ ଖୁବ ତୃପ୍ତି ହେଉଥିଲା
କିନ୍ତୁ ହଠାତ୍ ଏକ ପ୍ରଚଣ୍ଡ ଶବ୍ଦରେ ତୃପ୍ତିର ବୋତଲ ଭାଙ୍ଗି ଚୁରମାର
ଅଦୃଶ ସଂଖ୍ୟା ଭିତରେ ଅଦୃଶ୍ୟତର ଶୂନଟା
ପାରମାଣବିକ ବିସ୍ଫୋରଣରେ ଗର୍ଜିଉଠିଲା—
ଦେଖେଁ ସଂଖ୍ୟାର ଶରଶଯ୍ୟାରେ ପିତାମହ ଶୂନ ଶୋଇଛନ୍ତି
ତାଙ୍କୁ ହଲେଇ ହଉନି ।

ଗୋଟିଏ ଶୂନକୁ ନେଇ ବଡ଼ ବିପଦରେ ପଡ଼ିଛି ।

# ମୁରଗୀ ଭୋରରୁ ଚାଲିଯିବ

ମୁରଗୀ-ଡକା ଭୋରରୁ ମୁଁ ତୁମର ଶଯ୍ୟା ଛାଡ଼ି ଚାଲିଯିବ
ତୁମର ଟେକ୍ନିକଲର ସ୍ୱପ୍ନରୁ ବାହାରି
ଉଦ୍ୟାନର ରଙ୍ଗୀନ ସ୍ତବକରେ ଛେପ ଛିଟି
ତୁମର ଶୂନ୍ୟ ଦନ୍ତ ଲେମଣ ଆତତାୟୀ ଛାତିରେ ହାହାକାରର ଗଣ୍ଠି ଖୋଲି
ମୁଁ ଅନାୟାସେ ଚାଲିଯିବ ।

ମୋର ଲକ୍ଷ୍ମୀପାଦର ଚିହ୍ନଗୁଡ଼ିକୁ ତୁମର ବାରଣ୍ଡାରୁ ପୋଛିବ ନାହିଁ
କାନ୍ଥରେ ମୋର ଛିନ୍ନ ପତ୍ରର ଝଲ-ତଣ୍ଟୁଲ ଟିକି ଟିକି ଟୁକୁରା
ପୋଷା ପାରାବତ ପରି ପବନରେ ଉଡ଼ି ଉଡ଼ି ଆସିବ ;
ମାଟିନି ଶୋ'ର ଜୋଡ଼େ ବାଲକୋନି ଟିକେଟ, ଦେଖିବ
ମେହ୍ଗାନି କାଠର ଡ୍ରୟାରରେ ଧପ୍ ଧପ୍ କରୁଛି—
ଇଚ୍ଛା ହେଲେ ଯିବ, ସଙ୍ଗିନୀ ପାଇବ
ପାଇବନି କେବଳ ଶୂନ୍ୟ ପ୍ରାପ୍ତିର ବାଲିଚରେ, ମରୀଚିକାର ଆଲୋକରେ
ଆଖି ଭିତରେ ସ୍ଖଳିତ ମୋର ଛାୟା
ନିଦ୍ରାର ଘଣ୍ଟାଟିପ ଛାଡ଼ାଇ ପୋଖରୀ ଡେଇଁ
ରେଲ ଲାଇନ ଭିତରେ ମୁଁ ସେତେବେଳେ ଅଦୃଶ୍ୟ ।
ମୁରଗୀ-ଡକା ଭୋରରୁ ମୁଁ ତୁମର ମଶାରି କାଟି ବାହାରିଯିବ
ଯେମିତି ପ୍ରଜାପତି ଶୂକକୀଟର ମୋହାନ୍ଧକାର ଭିତରୁ ବାହାରିଯାଏ;
ତୁମକୁ ବୋକା ବନେଇ ଅନେକ ଦୂର ଚାଲିଯିବ

ଯେଉଁଠୁ କେହି କେବେ ଡାକ ଜବାବ ପାଏନା
ଯେଉଁଠି ସବୁ ଧ୍ୱନି ହିଁ ପ୍ରତିଧ୍ୱନି ।
ହସ୍ତରେଖା ଶୂନ୍ୟ ହାତପରି ମୁଁ ଯେତେବେଳେ ଭାଗ୍ୟ ନିୟନ୍ତ୍ରଣର ସେପାରିରେ
କିଂବୋଷ୍ଣ ଉତାପରେ ବାଷ୍ପୀଭୂତ ମୋର ସ୍ମୃତି
ଦାହିକ ବାପହିରେ ଏକୁଟିଆ ମେଲାକୁ ହୁଏତ ଫେରି ଆସିବ
ଘରଚଟିର ବସାରୁ କାଠି କୁଟା ଆସି ପଡ଼ିଥିବ କି ନା ଜାଣେନା
କିନ୍ତୁ ମୁଁ ତୁମର ଦାମ୍ଭିକ ଦ୍ୱିତଲକୁ ସ୍ୱର୍ଣ୍ଣ ସୀତା ହୋଇ ଫେରି ଆସିବିନି,

•

ପୋଖରୀର ମାଛମାନଙ୍କ ପରି ପବିତ୍ର ଶୀତଳରେ ପଡ଼ିବାକୁ ହେଲେ
ତୃଷ୍ଣାକୁ ହାତ ପାତିବା ଚଳେନା, ତେଣୁ
ତୁମର ଅତୃପ୍ତ ବାହୁର ବେଢ଼ା ଡେଇଁ, ତୁମର ପେଶୀର ଆକାଙ୍କ୍ଷାକୁ
ହେୟ କରି,
ଖଦ୍ୟୋତ ଓ ନକ୍ଷତ୍ରେ ନିବେଦିତ ରାତ୍ରିର ଘଟ ଖପରିଲ ସହିତ ମିଶେଇ
ତୁମର ବିଧ୍ୱସ୍ତ ନାଟକର ଆଖଡ଼ା ଚୂରମାର କରି
ମୁଁ ଅନାୟାସେ ଗ୍ଳଲିଯିବ ।
ବଗିଚ୍ଚାରେ ପଡ଼ି ରହିବେ ଦଳେ ଝିଙ୍କାରୀ
ଯୌନାଃପ୍ଲୁନିକ ସ୍ମୃତିର ନିର୍ମମ କୋରସ
ଏବଂ ତୁମର ନିର୍ଜୀବ ଦମ୍ଭର ଲାଳିତ ମୁଖୋସ
ପରିତ୍ୟକ୍ତ ପାଇଜାମା ପରି,
ଯେବେ ମୁରଗୀଡାକ ଭୋରୁ ତୁମର ଶଯ୍ୟା ଛାଡ଼ି ଗ୍ଳଲିଯିବ ।

# ଅସ୍ଫୁଟ ବାରୁଦ

ଗୁଳି କରେଁ, ଅସ୍ଫୁଟ ବାରୁଦ କଥା କହେନା,
ମ୍ରିୟମାଣ ଆଂଗ୍ଳିକ ସଞ୍ଝାର ହଳଦୀରେ ଅସ୍ପଷ୍ଟ,
ପଛରେ ଅନେକ ଅନେକ ଶତାବ୍ଦୀ ଏବଂ ଅନସ୍ତସ୍ଥ ଠେଉ, ହତ୍ୟାକାରୀ ମୁଁ,
ଏବଂ ମୋର ରକ୍ତାକ୍ତ ଶବ୍ଦ ଅନୁସରଣ କରେ ଅନେକ ପଦଶବ୍ଦ !
ଆଉ ଶବ୍ଦ ପଛରେ ଝକ୍ଷିଷ୍ଟଭ୍ରକ କୁକୁର ପରି
ଦଳେ ଗଳ୍ପଗ୍ରାହକ ଶର୍ଟହେଣ୍ଡପଟୁ ରିପୋର୍ଟର ଅସ୍ଥିର ।
ଗୋଟାଏ ବାରୁଦଗନ୍ଧୀ ଶବ୍ଦକୁ ଝାମ୍ପି ନେବାପାଇଁ ସାରା ସହର ଉତ୍ତେଜିତ ।

ଗୁଳି କରେଁ, ଅସ୍ଫୁଟ ବାରୁଦ କଥା କହେନା.
କଥା କହିବା ତାର ସ୍ୱଭାବ ନୁହେଁ, ତାର ସ୍ୱଭାବ ହତ୍ୟା କରିବା,
ସ୍ତବ୍ଧ କରିବା ।
ସର୍ବଶକ୍ତିମାନ ବାରୁଦ ଯେପରି ଈଶ୍ବର, ଏକ ମୁହୂର୍ତ୍ତେ
ଫୁଲତୋଡ଼ା ପରି ଉଦ୍ଭାସିତ ମୁହଁ ଗୁଡ଼ାଏ
ଡିନାର ଟେବୁଲରୁ ଟାଣିଆଣି
ଶୋକର ସମୁଦ୍ରରେ ଭସେଇଦିଏ, ଭଙ୍ଗା ମାସ୍ତୁଲର ଟୁକୁରା ।
ଅସମାପ୍ତ ପ୍ରୀତି ଭୋଜର ମଝିରେ ରୋଶନ ଚୌକର ସୁରରେ
ବିଷ ଢାଳିଦେଇ

ସର୍ବନାଶା ଟେଲିଗ୍ରାମଟି ଅାଖିକୁ ଛାଟ ମାରେ ।
ଗୁଳି କରେଁ, ଅଗ୍ନି ପରି ପବିତ୍ର ଆଉ ଅଛି କିଏ ?
ବୈଦିକ ଅଗ୍ନି ଦେବତାଙ୍କ ନାମରେ ଉତ୍ସର୍ଗୀକୃତ ଏଇ ମୋର ଆଗ୍ନେୟାସ୍ତ୍ର ।
ଅସ୍ତ୍ର ନା ଆଗ୍ନେୟଗିରି ? ଯାର ଉଦ୍‌ଗୀରଣେ ପ୍ରାସାଦ, ପାର୍ଲାମେଣ୍ଟ,
ପାଠଶାଳା ଜନ୍ମନେ ପାଉଁଶ ?
'ଅଗ୍ନେନୟ ସୁପଥା ରାୟେ ଅସ୍ମାନ'—
ହାୟ ସୁପଥ ! ଜଗତ ସଂସାର ଯେତେବେଳେ ବିପଥଗାମୀ, ଓଲଟ ପାଲଟ,
ସେତେବେଳେ ସୁପଥର ଏକମାତ୍ର ଚାଳକ ତୁମେ—ବାରୁଦର ଈଶ୍ୱର ।
ଗୁଳି କରେଁ, ଜୀବନେ ଏଇ ପ୍ରଥମ, ଯେହେତୁ
ମୁଁ ପେଶାଦାର ଘାତକ ନୁହେଁ, କଦାପି ହେବିନି,
ପବିତ୍ର ପୁରୋଧା ପରି—ନା ଖଡ୍‌ଗ ନୁହେଁ—ହାତରେ ଅଟୋମେଟିକ
ସଙ୍ଗୀନ ଧରି
ଏଇ ପ୍ରଥମ ମନ୍ତ୍ରପୂତ ଜୀବନକୁ ଟାଣି ନେଇ ଯାଉଛି
ବେଦୀରେ ଉତ୍ସର୍ଗ କରିବି ବୋଲି ।

ଏଇ ବେଦୀ ପ୍ରସ୍ତୁତ କରିଛି ଦଶବର୍ଷ ଧରି,
ଏଇ ବେଦୀ ମୋର ମତବାଦ, ମୋର ଭବିଷ୍ୟତ ସମାଜ, ଶତାବ୍ଦୀ ଓ
ମନୁଷ୍ୟତର ସେତୁ—ମୋର ବିଶ୍ୱାସ ।
ଅନେକ ଗ୍ରନ୍ଥ ଘାଣ୍ଟି, ଅନେକ ଆପ୍ତବାକ୍ୟର ବାଲି ସିମେଣ୍ଟ ଫେଣ୍ଟି
ପ୍ରସ୍ତୁତ କରିଛି ଏଇ ନିଶ୍ଛିଦ୍ର ବିଶ୍ୱାସ, ତା ପରେ
ମନ୍ତ୍ରପଢ଼ା ଜୀବନକୁ, ମୋର ସହଚର ବନ୍ଧୁକୁ ଟାଣି ନେଇ ଯାଉଛି
ବେଦୀର ଉତ୍ସର୍ଗ କରିବି ବୋଲି ।

ମୁଁ ଯେ ସିକାରକୁ କମ ଭଲ ପାଇଛୁ ତା ନୁହେଁ,
କିନ୍ତୁ ପ୍ରେମକୁ ଭଲ ପାଇଛୁ ଆହୁରି ବେଶୀ,
ଏବଂ ସେଇଥିପାଇଁ ପମୈର ମୂର୍ତ୍ତି ତଳେ
ମୋର ଅଟୋମେଟିକ ସଙ୍ଗୀତର ତେଡଶଟି ଗୁଳିରେ ବିଧ୍ୱସ୍ତ
ରକ୍ତାପ୍ଲୁତ ମୋର ବନ୍ଧୁ, ମୁଁ ହତ୍ୟାକାରୀ,
ମୋ ପଛରେ ଅନେକ ଅନେକ ଶତାବ୍ଦୀ, ଏବଂ ଅନାଶ୍ଚର୍ଯ୍ୟ ଛେଉ ଏବଂ
ମୋର ଆପାଦ୍‌ବଦ୍ଧ ଶବ୍ଦ ଅନୁସରଣ କରେ ଅନେକ ଅନେକ ପଦଶବ୍ଦ ।
ସେମାନଙ୍କୁ ବାରଣ କରିବା ପାଇଁ କେହି ନାହିଁ, କାରଣ ଏଇ ମୁହୂର୍ତ୍ତେ
ମୋର ଚକ୍ଷୁ ବାରୁଦାଚ୍ଛନ୍ନ, କଣ୍ଠ ବାରୁଦାପ୍ଲୁତ ଏବଂ ଗୋଇଠି ବାରୁଦରେ
ପ୍ରତିଧ୍ୱନିତ ।

ମୁଁ ଜାଣେନା କିଏ ମୁଁ, କାହିଁକି ମୁଁ,
ମୋର ଦୁଇ ହାତରେ କାହାର ବାଦନଖ ?
ମୁଁ ଜାଣେନା ଏଇ ବିସ୍ଫୋରକ ମୃଗନାଭି
ମୋତେ କେଉଁ ଆଉ ଦେଶକୁ ଟାଣି ନେଇଥିବ ।
ଅସ୍ତ୍ର ବାରୁଦ କଥା କହେନା,
ମିସ୍ତ୍ରମାଣ ଆଙ୍ଗୁଳି ସଧାର ହୁଳଧାରେ ଅସ୍ପଷ୍ଟ,
ପଛରେ ଅନେକ ଶତାବ୍ଦୀ ଏବଂ ଅନାଶ୍ଚର୍ଯ୍ୟ ଛେଉ, ହତ୍ୟାକାରୀ ମୁଁ, ଏବଂ
ମୋର ରକ୍ତାକ୍ତ ଶବ୍ଦ ଅନୁସରଣ କରେ ଅନେକ ପଦଶବ୍ଦ ।

# ମୋତେ ଖୋଲ

ମୋତେ ଖୋଲ ଓଲଟ ପାଲଟ କର
ମୁଁ ତୁମକୁ ଶସ୍ୟ ଦେବି,
ମୋତେ ମେଘ ବିଦ୍ୟୁତ୍-ଜଳପ୍ରପାତ ଦିଅ
ମୁଁ ତୁମକୁ ସନ୍ତାନ ଦେବି ।
ମୋତେ ଆଲିଙ୍ଗନ ଦିଅ
ମୁଁ ତୁମକୁ ପ୍ରେମ ଦେବି ।
ମୋତେ କଷ୍ଟ ଦିଅ
ମୋ ଉପରେ ତୁମର ସମସ୍ତ ପରିଶ୍ରମ ରଖ
ମୁଁ ତୁମକୁ ସାଫଲ୍ୟ ଦେବି, ସୁଖ ଦେବି ।
ମୋ ଓଠରେ
ତୁମର ବିସ୍ଫୋରଣ ଘଟୁ
ମୁଁ ତୁମ ପାଇଁ ପ୍ରାସାଦ ତୋଳିଦେବି ତୁମର କଟିଦେଶରେ ।
ଯଦି ମୋତେ କନ୍ଦାଅ
ଏକାକୀ ବସେଇ ରଖ ବିରହିଣୀ ଶ୍ରାବଣେ
ମୁଁ ତୁମକୁ ଅଭିଶାପ ଦେବିନି
ଗୋପନରେ ସିଲେଇ କରିବି ତୁମ ପାଇଁ ଗୋଟିଏ କାନ୍ଦଣାର କନ୍ଥା!
ମୋତେ ବୁକୁରେ ରଖ
ମୁଁ ତୁମକୁ ସୁଖରେ ରଖିବି ।

# କଲିକତା.କଲିକତା କଲିକତା

ଯଦି ସ୍ୱର୍ଗ କେଉଁଠି ଥାଏ—ଆକାଶରେ, ମାଟିରେ, ମାଟିତଳେ
ନା, ସ୍ୱର୍ଗ କେଉଁଠି ନାହିଁ—କିନ୍ତୁ ଅଛି, ଏଇଠି—ଏଇ କଲିକତାରେ
ଅଙ୍କୁରିତା ନାଷ୍ପି ଯେ କେଉଁଠି ଲତେଇଉଠିବ କେହି ଜାଣେନା।
ଏବଂ ନିଷ୍ପେଷିତ ପୁରୁଷ, ସାହସୀ, ହନ୍ତାରକ,
ଅଛି ନୟନାଭିରାମ ନ୍ୟୁ ମାର୍କେଟ ଏବଂ ସନ୍ଧ୍ୟାଶୋଭି ବିପଣୀମାଳା
ଆଉ ଫୁଲେଲ ମଧୁ ମକ୍ଷିକା ଏବଂ ସେମାନଙ୍କର ମଧୁର ସ୍ୱ ଗୁଞ୍ଜରଣ, ଏବଂ
ଯେ କୌଣସି ଗଳିରେ ଫଳିତ ଜ୍ୟୋତିଷ, ଏବଂ
ଟେବୁଲରେ ଜୋଡ଼ା ଜୋଡ଼ା ତୃଷ୍ଣା—
କଲିକତା !

ଏଠି ବସନ୍ତର ଅନ୍ୟ ନାମ ମ୍ୟୁଜିକ କନ୍‌ଫରେନ୍‌ସ
ଶରତ୍—ପ୍ୟାଣ୍ଡେଲରେ ମାଇକର ପ୍ରଚଣ୍ଡତା
ବର୍ଷା—ବସ୍‌ଷ୍ଟାଣ୍ଡର ଗ୍ଲୁସ୍ଥାଲେକ ବା ବର୍ଷାତିର ସ୍ୱଳ୍ପ ପରିସର ଭିତରେ
ପ୍ରଥମ ଆଶ୍ଳିଷ୍ଟସାନ୍ନୁ ପ୍ରେମ ଏବଂ
ଶୀତ—ଆପେଲ, କମଲାଲେମ୍ବୁ ଓ ଅଙ୍ଗୁର ।

ନା, ସ୍ୱର୍ଗ କେଉଁଠି ନାହିଁ, କିନ୍ତୁ ଅଛି ଏଇଠି
ରକ୍ତରେ ହିଙ୍କାରର ସ୍ୱର, ସ୍ୱପ୍ନରେ ଡାୟାଲ୍‌ଟୋନ୍ ଏବଂ ଆଖିରେ ବିମ୍ବିତ

ଯାହାକୁ-ଭଲ-ନ-ପାଇ-ବଞ୍ଚା ଯାଏନା ସେଇ ମୁଁ-ମୁଁ-ମୁଁ
ରହିଛି କବୋଷ୍ଣ ନଦୀ ନିରବଧି ଏବଂ ଉଷ୍ଣ ନାରୀ ଦୁରଧିଗମ୍ୟା
ଅଛି ସଦ୍ୟ ଯୁବକପାଇଁ ପାର୍କ ଓ ରେସ୍ତୋରାଁ
ସଦ୍ୟ ଯୁବକ ପାଇଁ ଯୁବତୀ
ଏବଂ ଉଭୟଙ୍କ ପାଇଁ ଖବର ମନ୍ଥନ ଫେଣାରେ ଉଆସ
ଭାରତ ବର୍ଣ୍ଣନ କଫି ହାଉସ ।

ନା, ସ୍ୱର୍ଗ କେଉଁଠି ନାହିଁ, କିନ୍ତୁ ଏଠି ଅଛି ମାହ-ଭାଦର ଗଙ୍ଗା,
ଜାଲରେ ମସୃଣ ପେପର ବେକ ପରି ରୂପା ଚକ ଚକ, ଇଲିଶି ଏବଂ
ଜଳରେ ଦଳ ଦଳ ପହଁରା—ଅସଂଖ୍ୟ ନୌକା, ଲଞ୍ଚ
ଦାମ୍ଭିକ ସମୁଦ୍ରଗାମୀ ଜାହାଜ ଏବଂ
ହଠାତ୍ ହଠାତ୍ ଅଶ୍ଳୀଳ, ତୀବ୍ର, ମାଦକ ଉପସାଗରର ସୁତୀକ୍ଷ୍ଣ ଶୀଷ
କଲିକତା ।

ଏଠି ଅଛି କଣ, ନାହିଁ କଣ ?
ପିଲାଙ୍କ ପାଇଁ ପ୍ଲାନେଟାରିଅମ, ପ୍ରାପ୍ତ ବୟସ୍କଙ୍କ ପାଇଁ ସିନେମା,
ଏବଂ ପଳିତ ବୃଦ୍ଧଙ୍କ ପାଇଁ ଭାଗବତ,
ବନ୍ଧୁଙ୍କ ବନ୍ଧୁତ୍ୱ, ତୃଷାର୍ତ୍ତଙ୍କ ପାଇଁ ପାନୀୟ, ଆଗନ୍ତୁକଙ୍କ ପାଇଁ ରେଶନ ।
ଆପଣ ବିଦେଶୀ ?
ଆପଣ ଏଠି ସୁଖରେ ରହିବେ ।
ଆପଣ ବିଦେଶିନୀ ? ଆପଣ ବି ।
ଯେ କୌଣସି ଆଖି ପାଇଁ କଜଳ,
ଯେ କୌଣସି ପାଇପ ପାଇଁ ଟବାକୋ—

ଯାର ନାଁ କଲିକତା ।
ଏଠି ନାହିଁ କଣ ?
ନାୟକ ପାଇଁ ନାୟିକା ଏବଂ ନାୟିକା ପାଇଁ ଇନ୍ଦ୍ରପୁରୀ,
ଆବୃତ୍ତି-ଉପଯୋଗୀ ଆଧୁନିକ କବିତା, ଲଘୁ ସୁର ପାଇଁ ଗୀଟାର
ଛବି ପାଇଁ ପ୍ରଦର୍ଶନୀ ଏବଂ ତା ଉପରେ ସହୃଦୟ ସମାଲୋଚନା ।
ଏଠି ଇଚ୍ଛାର ଶେଷ ନାହିଁ ଉପସ୍ଥିତ ବି ଅନନ୍ତ ।
ବନ୍ଧୁ ନିଶ୍ଚିତ,. ଅନିନ୍ଦ୍ୟ ଏଇ ଶୋ-କେସ୍-ସୁନ୍ଦରୀ-ସହରର ନାମ
କଲିକତା ।

ଏଇ ସହର ସମସ୍ତଙ୍କୁ ଟାଣେ — ଅହୋରାତ୍ର ।
ଲଭ ଦେଖେଇ, ଲୋଭ ଦେଖେଇ,
ଲୁକ୍‌କାୟିତ ଇଚ୍ଛାର ଦେହରେ ହାତ ବୁଲେଇ,
ବେଙ୍କର କାଉଣ୍ଟରରେ ନୋଟର ବଣ୍ଡିଲ ଶିକାରୀ ପିସ୍ତଲ ଦେଖେଇ,
ନିଲମ ଘରେ ହାତୁଡ଼ି ଠୁକି, ବାଟରେ ନୟନାଭ ଆଖିର ଚୁମ୍ବକ
ଦେଇ କେବଳ ଟାଣେ ।
ଟାଲ୍ଲରେ, ଗଡ଼ିଆ ହାଟରେ, ଧନୁକ-ବଙ୍କା
ଓଭରବ୍ରିଜ୍ ଫ୍ଲକ ପିନ୍ଧା ଝିଅକୁ ଟାଣେ,
ଏବଂ ଉନ୍ମାଦିନୀ ଲରୀର ଚକା ଅମନସ୍କ ପଥିକକୁ, ମୃତ୍ୟୁ ଜୀବନକୁ
ରୌଦ୍ର ତୃଷ୍ଣାକୁ, ଟ୍ରାମ ଗାଡ଼ି ଅଫିସ ଗାମିନୀକୁ,
ଏବଂ କୋଲ୍‌ଡ ଡ୍ରିଙ୍କ ତୃଷ୍ଣାକୁ ଟାଣେ ।

ଏଠି ଲେକର ଜଳ ଶାନ୍ତ ଏବଂ ଗମ୍ଭୀର ।
ସେଠି ଭାସମାନ ଧାଦା ବୋଟ, ଫାଳଏ ଜୁଲ୍‌ଏଟର ବୁକେ

ଯେମିତି କଥା କହୁ ଉଠେବ—
"ଆସ ଗ୍ରସି ଆସ ରୋମିଓ, ଆସ ତୁମେ ଗ୍ରସିର ଦ୍ୱବାକଂ"
ଘାସରେ, ପବନରେ, ଟେଲିଫୋନ ତାରରେ
କମଲା ରଙ୍ଗର ଜୁଲୁଜୁଲା,
ମାଟିରେ ଷ୍ଟ୍ର ବକୁଡ଼ି ହୋଇ ପଡ଼ିଛି,
ପାଖରେ ବାଦାମ ଗ୍ରେପା ଏବଂ ଆଇସକ୍ରୀମ ପଟ
ଏବଂ ଚମତ୍କାର ଶିଶଶିଗଁ ହ୍ୱାର୍ଦ୍ଧ।
ଯଦି ଲୋକଙ୍କୁ ଆସି ନାହାନ୍ତି ତେବେ ଆପଣ ଏବେ ବ ମା ପେଟରେ।
ସ୍ୱର୍ଗ କେଉଁଠି ନାହିଁ, କିନ୍ତୁ ଏଠି
ମଇଦାନରେ କିଏ କେବେ ପୋତିଥିଲା ଗୋଟାଏ ସ୍ୱର୍ଗର ମଇ-ମନୁମେଣ୍ଟ,
ଯା'ର ପାଦରେ ମିଟିଂ, ଦେହରେ ଘୁରଣି ସିଡ଼ି, ମୁଣ୍ଡରେ ଛୁଅ ଋତୁ।
ଏଠି ସାରା ଦେଶର ଧିକ୍କାର, ରାଗ. ଆହ୍ଲାଦ,
ସାରା ସଂସାରର ଉତ୍ତେଜନା, ମଞ୍ଚ ଉପରକୁ ଉଠେ।
ଏବଂ ମଣିଷର ସମୁଦ୍ର ଭିତରେ ଏଇ ମେଘ ଛୁଆଁ ମଇ
ଯେତେବେଳେ ଲାଇଟ ହାଉସ
ସେତେବେଳେ ଇତିହାସ ତିଆରି ହୁଏ।
ସ୍ୱର୍ଗ ଯଦି ଯେଉଁଠି—ନା କେଉଁଠି ନାହିଁ,
କିନ୍ତୁ ଏଇ ପୃଥିବୀର ଭୂଗୋଳରେ ଅନ୍ତହୀନ ଆକାଙ୍କ୍ଷାର
ଅକ୍ଷରେଖାରେ ରହିଛି।
ଗଙ୍ଗାପର ପୁଣ୍ୟବନ୍ତୀ, ମନୁମେଣ୍ଟ ଶେ ଐତିହାସିକ
ଦକ୍ଷିଣ ହ୍ରଦ ପର ସାହସିକା—
କଲିକତା, କଲିକତା, କଲିକତା।

# ବଙ୍ଗ ଜନନୀ

ଭୂଗୋଳର ବନ୍ଧନ୍ଟା ଫୋଫାଡ଼ ଦେଇ, ମାନଚିତ୍ରେ ବାରକ୍ ମୁଁ
ସିଧା ତୋର ଶ୍ୟାମାକାଳୀ ମୁହଁକୁ ଚାହିଁଲି ।
ତୁ ମୋର ମାଟିମୟୀ ବଙ୍ଗ ମାତା, ମୁଁ ତୋର ସନ୍ତାନ,
ଆମ ମଝିରେ ଦୋଭାଷୀମାନେ ଭିଡ଼ କରନା, ଦରକାର ନାହିଁ ।

ରବୀନ୍ଦ୍ର ସଙ୍ଗୀତ-ପ୍ରତିଫଳିତ ଶ୍ରାବଣ
ଅଜସ୍ର ମେଘଳ-ପଥ୍-ଦୁଧ-ଦୁହାଁ ବୃଷ୍ଟି
ଯା'ର ଭିତରେ ମୋର ଜନ୍ମ, ଏଇ ମୋ'ର ବଙ୍ଗ ଦେଶ,
ଏଇ ଜଣ୍ଡଧଣ୍ଡ ରୌଦ୍ର ପୁଷ୍ଟିତ ଦବଦ୍ଦ ଏଇ ସ୍ୱପ୍ନବାସବଦତ୍ତା ରାତ୍ରି
ଏଇ ମୋର ବଙ୍ଗ
ଏଇ ଦେଶ ଜନନୀ ।

ପୃଥିବୀର ସମସ୍ତ ଆବେଗ ଦ୍ରବୀଭୂତ କରି
ମାଟିର ଏଇ ସନ୍ତରା ଗନ୍ଧେ ଭରପୂର 'ପଥେର ପାଞ୍ଚାଳୀ' ତୋର ରାମାୟଣ,
ଲାଲ ମାଟିର 'ହାଁସୁଲି ବାଙ୍କେର ଉପକଥା' ତୋର ମହା ଭାରତ,
ଏବଂ ସାତରକାର ଧନ 'ପଦ୍ମାନଦୀର ମାଝୀ' ତୋର ଶତାବ୍ଦୀର ଶାହନାମା ;
ତୁ ଆମର ରୂପକଥା, ପୁରାଣ, ଇତିହାସ, ତୁ ଆମ୍ଭର ଜୟସ୍ତମ୍ଭ ।

ବଙ୍ଗ ମାଟିର ପ୍ରଲେପ —ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ—ମୋର ସମଗ୍ର ଦେହେ,
କପାଳେ ମଧ୍ୟାହ୍ନ-ଦଗ୍ଧ ପ୍ରାଚୀନ ତାମ୍ରଲିପି ;
ମୋ ଗୃହ ଭିତରେ ଯେଉଁ ଗାଢ଼ ତରୁଭୂଜର ଆବେଗ,
ଆଖିରେ ଉଦ୍ଭ୍ରାନ୍ତ ଶଙ୍ଖଚିଲ,
ସ୍ୱପ୍ନରେ ଅମ୍ଳ-ଖାସ୍ଥରରେ ଭଟିୟାଳ—
ଏସବୁ କିଛୁ ତୋର ନଦୀର ତଟ, ଆକାଶ, ଜଳସ୍ରୋତରୁ
ସିଧା ମୋ ଭିତରକୁ ଉଠିଆସିଛି ।

ବଙ୍ଗଜନନୀ, ତୋର ଚନ୍ଦ୍ରା କପୋତାକ୍ଷ ନଦଗଙ୍ଗାର ସ୍ରୋତ ମୋର ରକ୍ତରେ,
ମୋର ଜନ୍ମର ଆତ୍ମକଥା ତୋର ଇତିହାସ ଭିତରେ ନିବଦ୍ଧ,
ମୋର ସ୍ନିଗ୍ଧ-ଶ୍ୟାମ, ରୁଦ୍ର-ଉଜ୍ଜ୍ୱଳ, ନଦୀ ପ୍ରତିମା ମା !

ତୋର ବଗିଚାରେ ଏତେ ସୌରଭ, ଫଳରେ ଏତେ ସ୍ୱାଦ,
ତୋର ଅଗଣାରେ ଉଚ୍ଛ୍ୱଳିତ ରୌଦ୍ର
ଯେମିତି —ସ୍ୱଇ ତରୁଣୀର ଆଖି—ଏମିତି ଆକୁଳ,
ରକ୍ତାଭ ଈଶାନ କୋଣେ ଝଡ଼ର ଏତେ ଦର୍ପ,
କିଷାନର ଗୃହ ଏତେ ସାହାସୀ, ତରୁଣର ପେଶୀ ଏତେ ଆଦର୍ଶପରାୟଣ,
ତୁ ଆମ ସଭିଙ୍କର ଜନ୍ମଦାତ୍ରୀ, ଧାତ୍ରୀ, ଜନ୍ମଭୂମି ।

ବିବାଦ ବିସମ୍ବାଦ, ହତ୍ୟା-ଆତ୍ମହତ୍ୟା, ଈର୍ଷ୍ୟା କଳହ ସବୁ ଶେଷ ହେଲେ,
ଆମେ ବଙ୍ଗର ଭାଇଭଉଣୀ ଈଶ୍ୱରଙ୍କ ନିକଟରେ, ଆଲ୍ଲାଙ୍କ ନିକଟରେ ନତଜାନୁ
ପୁଣି ମୁହଁ ଫେରାଉଁ ତୋର ଅଭିମାନିନୀ ପଦ୍ମାବତୀ ଭାଗୀରଥୀ ଆଡ଼କୁ ।

ଅନ୍ଧକାର ଯେବେ ଆଲୋକ ଦିଏନା, ପଥ ଦେଖାଏନା,
ତୋର ଦୁଧିଆଳ ଦେହରେ ଅନ୍ଧ ପରି ଆଘାତ କରେ,
ତୁ କଥା କହୁନା, ଯନ୍ତ୍ରଣୀ-ସ୍ୱଧ କାଟୁ ଯନ୍ତ୍ରଣାରେ,
ଆମର ନବାନ୍ନ ଉଠିଲୁ ଆମେ ଇମିଠ ପଟେଇ ଦେଉଁ ;
କିନ୍ତୁ ତୁ ଆମର ସର୍ବଂସହା ଜନନୀ ଆଶାବ ଦାନୀ ।

ଭୂଗୋଳେ ବା ମାନଚିତ୍ରେ ତୁ ଅଛୁ କି ନା ଜାଣେନା,
କେବଳ ଜାଣେ ତୋର ନୀଳାକାଶୀ ମୁହଁ ମୋ ମୁହଁ ଉପରେ,
ମୋ ସ୍ୱପ୍ନ ଜାଗରଣ ଜନ୍ମ ମୃତ୍ୟୁ ଉପରେ ତୋ ମୁହଁର ଆଲୋକ,
ମୋର ଇତିହାସ ତୋର ଇତିହାସପଟରେ ଚିତ୍ରିତ,
ତୁ ମୋର ବଙ୍ଗ, ମୋର ଦେଶ ଜନନୀ ମା !



ଡକ୍ଟର ଜଗନ୍ନାଥ ଚକ୍ରବର୍ତ୍ତୀ : ଜନ୍ମ ୧୯୨୪ । ଯାଦବପୁର ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ । ଆଧୁନିକ ବଙ୍ଗ ସାହିତ୍ୟର ପ୍ରତିନିଧି କବି । ୧୯୭୧ର ଭାରତୀୟ ଆକାଶବାଣୀ କବି ସମ୍ମିଳନୀରେ ବଙ୍ଗଳାର ଜାତୀୟ କବି ନିର୍ବାଚିତ । ପ୍ରକାଶିତ ଗ୍ରନ୍ଥ 'ମନ୍ଥାଦିଗନ୍ତ' 'ପାର୍କଷ୍ଟ୍ରୀଟର ସ୍କେଚ୍' ଇତ୍ୟାଦି । ମୁଖ୍ୟ ଭାରତୀୟ ଭାଷା ତଥା ଜର୍ମାନ, ଫ୍ରେଞ୍ଚ ଓ ଇଂରାଜୀରେ ସ୍ୱକୀୟ କବିତାର ଅନୁବାଦ ପ୍ରକାଶିତ । ଡକ୍ଟରେଟ ଥିସିସ—*The Idea of Revenge in Shakespeare* ପାଇଁ ପୃଥିବୀରେ ସମ୍ମାନିତ । ୧୯୬୪ରେ ଷ୍ଟ୍ରାଟ୍-ଫୋର୍ଡ଼ ଅନ-ଆଭନ୍‌ରେ ଅନୁଷ୍ଠିତ ଆନ୍ତର୍ଜାତିକ ସେକ୍ସପିଅର ସମ୍ମିଳନୀରେ ପ୍ରଥମ ଭାରତୀୟ ଚେୟାରମେନ । କବି ମୌଳିକତା ଓ ପରୀକ୍ଷା-ନିରୀକ୍ଷାର ପ୍ରତିନିଧି । କବିତାରେ ଆଧିଭୌତିକ ସ୍ୱର ଓ ସଙ୍ଗୀତର ପ୍ରୟୋଗ । ସୁଲଭ ଜନପ୍ରିୟତାର ବିରୋଧୀ । କବିତାର ଉଜ୍ଜ୍ୱଳ ଭବିଷ୍ୟତରେ ଦୃଢ଼ବିଶ୍ୱାସୀ ।